# ସାଧବଝିଅ

ଲେଖକ

ଡାକ୍ତର ଅଦ୍ୱୈତଚନ୍ଦ୍ର ମହାନ୍ତି

ଗ୍ରନ୍ଥମନ୍ଦିର

ପ୍ରଥମ ଅଭିନୟ : ୧-୧୦-୧୯୪୭, ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ । ଏ ନାଟକର ଅଭିନୟ ପ୍ରଦର୍ଶନ ଲେଖକଙ୍କର ଅନୁମତିସାପେକ୍ଷ । କଥାଚିତ୍ର, ବେତାର ଓ ଗ୍ରାମଫୋନ୍ ରେକର୍ଡ ନାଟିକାସ୍ୱତ୍ୱ ଲେଖକଙ୍କର ।

ପ୍ରକାଶକ :
ଅଭିରାମ ମହାପାତ୍ର
ଗ୍ର ନ୍ଥ ମ ନ୍ଦି ର
କଟକ-୨ : ବ୍ରହ୍ମପୁର-୧

ମୁଦ୍ରକ :
ରାଜାରାମ ମହାପାତ୍ର
ମହାପାତ୍ର ବ୍ରଦର୍ସ
ବ୍ରହ୍ମପୁର-୨

ଚତୁର୍ଥ ସଂସ୍କରଣ : ୧୯୬୨
ପଞ୍ଚମ ସଂସ୍କରଣ : ୧୯୬୭
ଷଷ୍ଠ ସଂସ୍କରଣ : ୧୯୭୪
ସପ୍ତମ ସଂସ୍କରଣ : ୧୯୭୫
ଅଷ୍ଟମ ସଂସ୍କରଣ : ୧୯୭୬
ନବମ ସଂସ୍କରଣ : ୧୯୭୭
ଦଶମ ସଂସ୍କରଣ : ୧୯୭୮
ଏକାଦଶ ସଂସ୍କରଣ : ୧୯୮୦

ମୂଲ୍ୟ : ଟ ୭·୫୦

[ This book has been printed on paper made available by Govt. of India at concessional rete ]

# ସ୍ମରଣିକା

ସବୁ ଦୁଃଖ ଭୁଲେଇ ଦେବ ବୋଲି
ତା ନାଆଁ ଦିଆହୋଇଥିଲା
"ଭୁଲୁ !"

ଆଜି ସେଇ ଭୁଲୁ-ବିଚ୍ଛେଦ-ଦୁଃଖ
ଭୁଲେଇବ କିଏ ?
କେହି ତ ନାହିଁ !!

ସେ ଥିଲାବେଳେ ମୋର ଖାତାପତ୍ର ଯାହା
କିଛି ପାଇଲେ ପଢ଼ି ବସିବା ତାର ଅଭ୍ୟାସ ଥିଲା ।
ଆଜି ବି ତାର ଅଦେଖା ହାତ
ସେଇ କାମ କରୁଚି—
ସ୍ୱପ୍ନ ନୁହେଁ—
ସତ କହୁଚି,
ମୋର ଖାତାପତ୍ରରେ ଯେମିତି
ତାର ହାତର ଦାଗ ରହିଯାଉଚି—
ଆଉ ମୋ ଆଖିରୁ ଛୁଟୁଚି
ଶ୍ରାବଣର ଧାର···

ତା'ର କଂଗାଳ ସାଇ

# ପ୍ରଥମ ପ୍ରକାଶ ବେଳେ

ନିଜକଥା

'ସାଧବଝିଅ' ମୋର ପ୍ରାୟ ୧୨।୧୩ ବର୍ଷ ତଳର କଳ୍ପନା; ମାତ୍ର ସେ କଳ୍ପନାକୁ ରୂପ ଦେବାର କ୍ଷୀଣ ସୁଯୋଗ ମିଳିଲା—ଯେତେବେଳେ ଅନ୍ନପୂର୍ଣ୍ଣା ଥିଏଟର 'ବି-ଗ୍ରୁପ୍' ଦୁଇବର୍ଷ ତଳେ ପୁରୀରେ ଥିଲାବେଳେ ମୋତେ ଖଣ୍ଡିଏ ନାଟକ ପାଇଁ ଜଗର କଲେ ।

ସେ କାଳର ନିପଟ ଓଡ଼ିଆଣୀ 'ସାଧବଝିଅ'କୁ ଏ କାଳର ନବ୍ୟସଭ୍ୟ ସମାଜ କି ଆଖିରେ ଦେଖିବ—ଦେଖି ନାକ ଟେକିବ କି—ଏ ଆଶଙ୍କା ମୋର ମନରେ ଥାଏ; ମାତ୍ର ପରେ ଶୁଣିଲି ଅଭିନୟ ଦେଖିବାପାଇଁ 'ଅନ୍ନପୂର୍ଣ୍ଣା'ରେ ଲୋକଭିଡ଼ ହେଉଛି । ତା ପରଠାରୁ ଅନ୍ନପୂର୍ଣ୍ଣା ଥିଏଟରଦଳ ଓଡ଼ିଶାର ବିଭିନ୍ନ ସ୍ଥାନରେ ବୁଲିଲାବେଳେ 'ସାଧବଝିଅ'କୁ ଦେଖିବା

ପାଇଁ ଲୋକେ ଜମିଯାଆନ୍ତି ବୋଲି ଶୁଣେ । ପ୍ରଗତିର ପ୍ରକୃତି ଯାହା ହେଉ ନା କାହିଁକି; ମୋ ଦେଶର ଭାଇ-ଭଉଣୀ ଯେ ସେମାନଙ୍କର ପ୍ରାଣ-ସତ୍ତା ହରାଇ ନାହାନ୍ତି—ଶୁଭ ଲକ୍ଷଣ ।

ଯା' ହେଉ—'ସାଧବଝିଅ' ରଙ୍ଗମଞ୍ଚରେ ଭଲ ଉତୁରିଗଲା, ବାକି ନାଟକ ହିସାବରେ ତାର ସାଫଲ୍ୟ କେତେଦୂର ବା ଆଦୌ ଅଛି କି ନାହିଁ—ତାର ବିଚାରକ ମୁଁ ନୁହେଁ । ସୁତରାଂ ସେ ଆଲୋଚନାରୁ କ୍ଷାନ୍ତ ରହି, କେବଳ ନାଟକର କଥାବସ୍ତୁ ନେଇ ଗୋଟିଏ ଦୁଇଟି କଥା ମୋର ଏଠି କହିଦେବା ଉଚିତ ବୋଲି ମୋର କେତେକ ସାହିତ୍ୟିକ ବନ୍ଧୁ ମୋତେ ବିଗିଦ କରିବାରୁ କହୁଚି—

ପ୍ରଥମ କଥା—ତଅପୋଇ ଆଖ୍ୟାୟିକାରେ କୌଣସି ଐତିହାସିକ ସତ୍ୟ ଅଛି କି ନାହିଁ ? ମୁଁ କହେ—ଅଛି; କାରଣ, ଏହିପରି ଆଖ୍ୟାୟିକା, କିମ୍ବଦନ୍ତୀ, ଭାସ୍କରଶିଳ୍ପ, ଶିଳାଲେଖ, ସାମାଜିକ ରୀତି-ନୀତି ଆଦିରୁ ହିଁ ଇତିହାସର ଉପାଦାନ ସଂଗ୍ରହ କରାଯାଇଥାଏ—ସବୁ ଦେଶରେ, ସବୁ କାଳରେ । ଇତିହାସ କହେ ଆମ ଦେଶରେ ନୌବାଣିଜ୍ୟ ଥିଲା, ସୁସମୃଦ୍ଧ ବନ୍ଦରମାନ ଥିଲା, ସାଧବକୁଳ ଥିଲେ ଇତ୍ୟାଦି ଇତ୍ୟାଦି । ଅତଏବ ଯେଉଁ କାଳରେ ଏ ସବୁର ଅବସ୍ଥା ଉନ୍ନତ ଥିଲା, ସେହି କାଳର ବିବିଧ ଘଟଣାକୁ ଆଶ୍ରୟ କରି ନାନା ଗଳ୍ପ ବା କାହାଣୀ ଲୋକ-ପରମ୍ପରାରେ ଚଳିଆସୁଥିବା ଯେମିତି ବିଚିତ୍ର ନୁହେଁ, କାଳକ୍ରମେ ନୌବାଣିଜ୍ୟର ସେହି ସ୍ୱର୍ଣ୍ଣଯୁଗ ଶେଷ ପାଇବା ପରେ ସେହି ଯୁଗର କୌଣସି ସତ୍ୟ ଘଟଣା ଏଯୁଗରେ କାହାଣୀ ବା ଆଖ୍ୟାୟିକାରେ ପରିଣତ ହୋଇଥିବା ସେମିତି ଅସମ୍ଭବ ନୁହେଁ । ହୁଏତ, ତଅପୋଇ ଆଖ୍ୟାୟିକାର ସତ୍ୟ ଦିଗଟା ସେହି ସମୟରେ ଓଡ଼ିଶା ଓ ତାର ସୁସମୃଦ୍ଧ ବୋଇତ-ବାଣିଜ୍ୟ, ମିଥ୍ୟା ବା ଗଳ୍ପ ଦିଗଟା ତଅପୋଇ ଓ ତାର ପାରିବାରିକ ଜୀବନ; କିମ୍ବା ହୁଏତ ସମଗ୍ର ଆଖ୍ୟାୟିକାଟି ସେହି ସମୟର ଗୋଟିଏ ନିର୍ଦ୍ଦିଷ୍ଟ ସତ୍ୟ ଘଟଣାକୁ ଆଶ୍ରୟ କରି ଗଢ଼ି ଉଠିଚି । ଯେଉଁ ଦିଗରୁ ଦେଖିଲେ ବି ତଅପୋଇ ଆଖ୍ୟାୟିକାରେ ଯେ ଐତିହାସିକ ସତ୍ୟ ନାହିଁ—

ଏହା ପ୍ରମାଣିତ ହୁଏ ନାହିଁ; ବରଂ ଇତିହାସ ସହିତ ଅଙ୍ଗାଙ୍ଗୀଭାବେ କାହାଣୀଟି ଜଡ଼ିତ ଥିବାର ମନେହୁଏ ।

କାହାଣୀ-ବର୍ଣ୍ଣିତ ବିଷୟଟିକୁ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଐତିହାସିକ ବୃତ୍ତ ଭିତରେ ଖଞ୍ଜିଦେବାଟା ମୋର କରଣୀ ନୁହେଁ—କେହି କେହି ଐତିହାସିକ ସେପରି କରିଛନ୍ତି । ଇତିହାସ ବି କହେ, ଷୋଡ଼ଶ ଶତାବ୍ଦୀ ଉତ୍କଳର ନୌବାଣିଜ୍ୟ-ଇତିହାସରେ ଘଟଣାପୂର୍ଣ୍ଣ ସମୟ ।

ଦ୍ୱିତୀୟ କଥା—କେତେକ ଆପତ୍ତି ଉଠେଇଛନ୍ତି—ତଅପୋଇକୁ ପ୍ରେମରେ ପଡ଼ିବାକୁ ଦେଇ ଓ ତା ଉପରେ ଦୁଷ୍ଟ କପିଳ ମହାପାତ୍ରର ଆଖି ପଡ଼ିବାକୁ ଦେଇ ମୁଁ 'ଖୁଦୁରୁକୁଣୀ' ପଦ୍ୟବର୍ଣ୍ଣିତ ଭାଲକୁଣୀ ତଅପୋଇ-ଚରିତ୍ରରେ ଆଞ୍ଚ ଆଣିଛି । ଏ କଥା ଯେଉଁମାନେ କହନ୍ତି, ସେମାନେ ତଅପୋଇକ ପୌରାଣିକ ଚରିତ୍ର ବୋଲି ଧରିନେଇଛନ୍ତି । ଅନ୍ନପୂର୍ଣ୍ଣା ଥିଏଟର ଏହି ଧାରଣାର ବଶବର୍ତ୍ତୀ ହୋଇ 'ସାଧବଝିଅ'କୁ ପୌରାଣିକ ନାଟକ ବୋଲି ପ୍ରାଚୀରପତ୍ର ମାରିବାର ମୁଁ ଜାଣେ; ମାତ୍ର ତଅପୋଇ କାହାଣୀ ପୁରାଣ ନୁହେଁ କି କସି ନକାଲେ ତଅପୋଇ ପୌରାଣିକ ଚରିତ୍ର ବୋଲି ଗ୍ରାହ୍ୟ ହୋଇ ନ ପାରେ । ଉତ୍କଳର ନୌବାଣିଜ୍ୟ ଇତିହାସର କଥା—ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀ ଯାଏଁ ଯା'ର ପ୍ରଭାବ ଓ ପ୍ରସାର ଥିଲା—ସେହି ସମୟର ଐତିହାସିକ ଅବସ୍ଥାକୁ ଆଶ୍ରୟ କରି ଗଢ଼ିଉଠିଥିବା କୌଣସି ଗଳ୍ପ ବା ଘଟିଥିବା କୌଣସି ସତ୍ୟ ଘଟଣାକୁ ନେଇ ପୁରାଣଯୁଗରେ ଥୋଇବାର ଅର୍ଥ—ଇତିହାସକୁ ଅସ୍ପଷ୍ଟ କରିବାର ଅପଚେଷ୍ଟା । ତା ଛଡ଼ା, ସମଗ୍ର ତଅପୋଇ କାହାଣୀଟି ଓଡ଼ିଆ ଘର, ଓଡ଼ିଆ ସମାଜର ଚିତ୍ର; ଚରିତ୍ରଗୁଡ଼ିକ ବି ପୁରାପୁରି ଓଡ଼ିଆ—ସେଥିରେ କୁତ୍ରାପି ପୁରାଣର ଅଲୌକିକତା ଦେଖିବାକୁ ମିଳେନାହିଁ; ବରଂ ସେଥିରୁ ତଅପୋଇକ ଗୋଟିଏ ଋଦ୍ଧିମନ୍ତ ସାଧବ-ପରିବାରର ଝିଅ ଛଡ଼ା ଅନ୍ୟ କିଛି ଭାବି ହୁଏନାହିଁ । ତାର ସୁଖ-ଦୁଃଖ ଯେମିତି ଆମରି ସୁଖ-ଦୁଃଖ ଭଳି, ତାର ମନ ଯେମିତି ଆମରି ମନ ଭଳି—

ସେ ଭାଇମାନଙ୍କ ପାଖେ ଅଳି କରିପାରେ, ଭାଉଜମାନଙ୍କଠାରୁ ଗଞ୍ଜଣା ସହି କାନ୍ଦିପାରେ; ଆମରି ପରି ଦୁନିଆଁର ଜୀବ—ମନୁଷ୍ୟ—ଦେବତା ନୁହେଁ ।

ଆଉ ଗୋଟିଏ କଥା—ଖୁଦୁରୁକୁଣୀ ପଦ୍ୟରେ ତଅପୋଇର ବୟସ ଉଲ୍ଲେଖ ନାହିଁ । ହୁଏତ, ସେଥିରେ ତାକୁ ବାଳିକାଭାବେ ଚିତ୍ର କରାଯାଇଛି; ମାତ୍ର ମୁଁ ତାର ବୟସକୁ ଆଉ ଟିକିଏ ବଢ଼ାଇ ଦେଇ ଯୌବନ ପାଏଁ ଟାଣିଆଣିଛି । ଏହା ଯଦି ମୋର ଅପରାଧ ହୁଏ, ନାଟ୍ୟରସ-ସୃଷ୍ଟି ପାଇଁ ସେ ଅପରାଧ ମୁଁ କରିଛି । ସୁତରାଂ ତଅପୋଇ ପକ୍ଷରେ ଯୌବନର ସ୍ୱପ୍ନ ଦେଖିବା ଆଦୌ ବିଚିତ୍ର ନୁହେଁ କି ସେ କାହାରିକ ଭଲପାଇବା ଆଶ୍ଚର୍ଯ୍ୟକର ଘଟଣା ନୁହେଁ—ବରଂ ସ୍ୱାଭାବିକ । ସେହି ଦୃଷ୍ଟିରୁ, ଜଙ୍ଗଲରେ ଏକା ଏକା ଛେଳି ଚରାଇବାକୁ ଯାଇ, ରାତିର ଅନ୍ଧକାରରେ ଫେରିବାବେଳେ ଦୁଷ୍ଟ କପିଳ ମହାପାତ୍ରର ତା' ଉପରେ ଆଖି ପଡ଼ିବା ଅସ୍ୱାଭାବିକ ଓ ଅସୁନ୍ଦର ହେବ କାହିଁକି ?

କେତେକ ଏପରି ପ୍ରଶ୍ନ ବି କରନ୍ତି—ଭାଇମାନଙ୍କ ଆଦେଶରେ ତଅପୋଇ, ତାକୁ ଦୁଃଖ ଦେଇଥିବା ଭାଉଜମାନଙ୍କ ନାକ କାଟିପକାଇବା, ସେମାନେ ଜଙ୍ଗଲକୁ ପଳେଇ ଯାଇ ବାଘ ହାବୁଡ଼ରେ ପଡ଼ିବା ଇତ୍ୟାଦି ଲୌକିକ ଅଲୌକିକ ଯେଉଁ ସବୁ ଘଟଣା ଖୁଦୁରୁକୁଣୀ ପଦ୍ୟରେ ଅଛି—ସେସବୁ ନାଟକ ଶେଷରେ ଦିଆଗଲା ନାହିଁ କାହିଁକି ? ସେମାନଙ୍କୁ ମୁଁ କି ଉତ୍ତର ଦେବ ? ଭାଉଜମାନଙ୍କର ଦଣ୍ଡ ଦେଖାଇବା ଲାଗି ଆଉ ୪।୫ ପତ୍ର ଲେଖିଦେବାକୁ ମୁଁ ବର୍ତ୍ତମାନ ସୁଦ୍ଧା ରାଜି । ହେଲେ ନାଟକୀୟ ରସ ଓ ନିର୍ମାଣଶୈଳୀକୁ ବ୍ୟାହତ କରି ଅବାନ୍ତର ପ୍ରସଙ୍ଗ ବାଢ଼ିବାର ସାହସ ମୋର ନାହିଁ । ସମାଜ-ବନ୍ଧନ ଆଉ ପାରିବାରିକ ଜୀବନରେ କେଉଁ ଉତ୍କଟ ଦଣ୍ଡର ବା କଳ୍ପନା କରାଯାଇପାରେ ? ତା' ଛଡ଼ା ତଅପୋଇ ତାର ଭାଇମାନଙ୍କୁ ଓ ତାର ପ୍ରାଣପ୍ରିୟ ସୁମନ୍ତକୁ ଫେରିପାଇବାର ଆନନ୍ଦ ଭିତରେ ଭାଉଜମାନଙ୍କର ଦୋଷ ଭୁଲିଯାଇ ସେମାନଙ୍କୁ କଅଣ କ୍ଷମା କରି ନ ପାରେ ? ଭାଉଜମାନେ ନିଜେ ନିଜର

ଭୁଲ ତ୍ରୁଟି ସ୍ୱାମୀଙ୍କଠାରୁ କଅଣ କ୍ଷମା ମାଗି ନ ପାରନ୍ତି ? ସ୍ତ୍ରୀମାନେ ବାହୁଡ଼ିଲା ପଥରେ ଭଉଣୀ କଥା ଅବଶ୍ୟ ଶୁଣିଥିଲେ; ମାତ୍ର ସେଥି ସଙ୍ଗେ ସଙ୍ଗେ ବହୁଦିନରୁ ଦେଖି ନ ଥିବା ନିଜ ନିଜର ପ୍ରିୟତମାମାନଙ୍କ ନିବିଡ଼ ଆଶ୍ଳେଷ-ମାଧୁର୍ଯ୍ୟ କଳ୍ପନା କରି ସେ ମନେ ମନେ ପୁଲକି ଉଠୁ ନ ଥିଲେ —ଏ କଥା କହି ହେବ କି ? ସୁତରାଂ ଦଣ୍ଡ ଦେବାର ପ୍ରତିଜ୍ଞା ସତ୍ତ୍ୱେ ଘରକୁ ଫେରି ସେମାନେ ସ୍ୱାମୀମାନଙ୍କ ଉପରେ ସାମାନ୍ୟ ଅଭିମାନ କରି କଅଣ ସେ ଅପ୍ରୀତିକର ବ୍ୟାପାରର ସମାଧାନ କରି ନ ପାରନ୍ତି ? ଘଟଣା-ଚକ୍ରରେ ଭଉଣୀର ଦୁଃଖ, ତାର ଶୋଚନୀୟ ଅବସ୍ଥା ଦେଖି ହଠାତ୍ ବିଚଳିତ ହୋଇ ଉଠିବା ବିଚିତ୍ର ନୁହେଁ; ମାତ୍ର ବହୁଦିନ ପରେ ପ୍ରିୟତମା ପତ୍ନୀମାନଙ୍କ ସହିତ ମିଳିତ ହେବାର ଯେଉଁ ରଙ୍ଗିନ୍-କଳ୍ପନା, ସେଇଟା ଏକାବେଳକେ ମନରୁ ପୋଛିପକାଇ, ସ୍ୱାମୀମାନଙ୍କ ନାକ କାଟିବାକୁ ସ୍ତ୍ରୀମାନେ ଆଦେଶ ଦେବାଟା ତଅପୋଇ କାହାଣୀର ଅତି ଅବାସ୍ତବ ଅଂଶ ବୋଲି ମୋର ବିଶ୍ୱାସ ।

କଥାବସ୍ତୁ ସମ୍ପର୍କରେ ଯାହା କିଛି କୈଫିୟତ ମୋର ଦେବାର ଥିଲା, ଦେଲି । ବାକି ରହିଲା କେତେଗୁଡ଼ିଏ ଚରିତ୍ର; ଯଥା—ସୁମନ୍ତ, ଶୁଭେନ୍ଦୁ, ସୁଧା—ଯେଉଁମାନେ ତଅପୋଇ କାହାଣୀକୁ ନାଟକ କରି ଗଢ଼ିବାରେ ବିଶେଷ ଅଂଶ ଗ୍ରହଣ କରିଚନ୍ତି—ସେହିମାନଙ୍କର ଅବତାରଣା ସମ୍ବନ୍ଧରେ ସଫେଇ । ସତ କହିବାକୁ ଗଲେ ସେମାନଙ୍କର ନାମ-ଧାମ ମୁଁ ଇତିହାସରୁ ଆହରଣ କରିନାହିଁ କି ସେମାନଙ୍କର ଅସ୍ତିତ୍ୱ ସମ୍ପର୍କରେ ଜୋର୍ କରି କିଛି କହିପାରିବି ନାହିଁ । ତେବେ ଯେଉଁ ଶତାବ୍ଦୀର ଐତିହାସିକ ବୃତ୍ତି ଭିତରେ ମୁଁ 'ତଅପୋଇ' କାହାଣୀଟି ନେଇ ଥୋଇଚି, ସେହି ସମୟର ଇତିହାସ ଘାଣ୍ଟିଲା-ବେଳେ ଏମିତି କେତେଗୁଡ଼ିଏ ଘଟଣା ପରମ୍ପରାର ସନ୍ଧାନ ପାଇଲି ଯାହାକୁ ସବୁ ଖବୁ ଖବୁ ମୋ ଆଖି ଆଗରେ ଜୀବନ୍ତ ମୂର୍ତ୍ତିରେ ଛିଡ଼ା ହୋଇଗଲେ—ଅସଂଖ୍ୟ ନରନାରୀ—ମୋ ଦେଶର ସ୍ୱର୍ଣ୍ଣଯୁଗର ସମାରୋହ

ଧରି । ଲୋଭ ସମ୍ବରଣ କରିପାରିଲି ନାହିଁ । ମୁଁ ତ ଭାବେ, ସେ ସବୁ ଚରିତ୍ର ଐତିହାସିକ ନୁହେଁ—ଇତିହାସ ।

ବାକି ଚରିତ୍ରଗୁଡ଼ିକର ଅବତାରଣା, ନାଟକର ପ୍ରୟୋଜନ ଦୃଷ୍ଟିରୁ ସବୁ ନାଟକରେ ଯାହା ହୋଇଥାଏ ।

ଶେଷରେ ମୋର କହିବାର କଥା—ଯେଉଁ ସବୁ ପରିକଳ୍ପନା ନେଇ ମୁଁ 'ସାଧବଝିଅ'କୁ ରୂପ ଦେବି ବୋଲି ଭାବିଥିଲି, ତାହା ମୁଁ ପୁରାପୂରି ରକ୍ଷା କରି ପାରିନାହିଁ, ସେଥିପାଇଁ ଦାୟୀ ମୁଁ ତ ନିଶ୍ଚୟ; ତା ଛଡ଼ା ଦାୟୀ ଆମ ଦେଶର ରଙ୍ଗମଞ୍ଚ—ଯାହା ଆଜିଯାଏ ବିଗତ ଶତାବ୍ଦୀର ମାଟି କାମୁଡ଼ି ପଡ଼ିରହିଚି । ଉନ୍ନତି କରିବା ଦୂରର କଥା, ଅବନତିଟାକୁ ହିଁ ବୁଝିପାରୁ ନାହିଁ—ଜାଣିପାରୁ ନାହିଁ । ହେଲେ, ମୋ ଦେଶର ଗୌରବମୟ ନୌବାଣିଜ୍ୟର ଇତିହାସ ଦେଖି, ସାତସମୁଦ୍ରର ବୁକୁ ଚିରି, ସାଧବପୁଅଙ୍କର ବୋଇତ ମେଲିବାକୁ ଚିତ୍ର କରି ଜାଭା, ସୁମାତ୍ରା, ସିଂହଳ ଇତ୍ୟାଦିରେ ଓଡ଼ିଆ ପୁଏ ବସତି କରିବା କଥାକୁ ଆଶ୍ରୟ କରି ଏକ ବିରାଟ ବିଚିତ୍ର ପ୍ରକାଶ ଯଦି ସମ୍ଭବ ହୁଅନ୍ତା, ରଙ୍ଗମଞ୍ଚରେ ହେଉ, ଚଳଚ୍ଚିତ୍ରରେ ହେଉ—ଦୁନିଆ ଲୋକଙ୍କ ଆଖିଆଗରେ ସବୁ ଝଲସି ଉଠନ୍ତା । ଏହି ସ୍ୱପ୍ନ, ଏହି କଳ୍ପନା ମୋର ଥିଲା । ଆଜି ବି ତାକୁ ହିଁ ସମ୍ବଲ କରି ସେହି ସୁଦିନର ଅପେକ୍ଷାରେ ରହିଲି । ଜୟ ହିନ୍ଦ୍ ।

ପୁରୀ,
୨୨-୭-୪୯

ଶ୍ରୀ ଅଦ୍ୱୈତଚନ୍ଦ୍ର ମହାନ୍ତି

# ଦ୍ୱିତୀୟ ସଂସ୍କରଣ ସମ୍ବନ୍ଧରେ ପଦେ

'ଗ୍ରନ୍ଥମନ୍ଦିର'ଙ୍କ ଦ୍ୱାରା ଏବେ 'ସାଧବଝିଅ'ର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା—'ଭାରତୀଭଣ୍ଡାର'ଙ୍କଦ୍ୱାରା ପ୍ରଥମ ପ୍ରକାଶର ଦୀର୍ଘ ୯ ବର୍ଷ ପରେ । ଏହାହିଁ ଓଡ଼ିଆ ସାହିତ୍ୟ ବଜାରର ହାଲ—ସୁତରାଂ ଦୁଃଖ କରିବାର କିଛି ନାହିଁ ।

ଏଥିମଧ୍ୟରେ ଓଡ଼ିଆଣୀ ସାଧବଝିଅକୁ ସମସ୍ତେ ଚିହ୍ନି ଗଲେଣି । ଅନେକ ଗୁଡ଼ିଏ ନାଟ୍ୟଚରିତ୍ର ଥିବାରୁ ସାଧାରଣ ସୌଖୀନ ନାଟ୍ୟ ସଂପ୍ରଦାୟ ଏହାକୁ ମଞ୍ଚସ୍ଥ କରାଇବାରେ ଅସୁବିଧା ଭୋଗିଛନ୍ତି—ଏ ଅଭିଯୋଗ ବରାବର ରହିବ । ସେଥିନି ମୋର ମଧ୍ୟ ହାତ ନାହିଁ ।

ତେବେ ସାଧବଝିଅ ଏକାଧିକବାର ବିଶ୍ୱବିଦ୍ୟାଳୟର ପାଠ୍ୟ ହୋଇଛି ଓ ତାହାର ନାଟକୀୟ ତଥା ସାହିତ୍ୟିକ ମୂଲ୍ୟର ବିସ୍ତୃତ ଆଲୋଚନା ଏଥିଭିତରେ ବହୁ କ୍ଷେତ୍ରରେ ହୋଇସାରିଛି । ଯେଉଁସବୁ କଥାକୁ ଭିତ୍ତି କରି ଆଲୋଚନା ଚାଲିଆସିଛି—ତହିଁରୁ ପ୍ରଧାନ ହେଉଛି—'ସାଧବଝିଅ' ନାଟକର ଐତିହାସିକ ପୃଷ୍ଠଭୂମି ଓ ଐତିହାସିକତା ଅଛି କି ନାହିଁ । ସେ ସମ୍ପର୍କରେ ମୋର ଯାହା କହିବାର, ପ୍ରଥମ ସଂସ୍କରଣର "ନିଜକଥା"ରେ କହିଛି—ଚର୍ବିତଚର୍ବଣ କରି ଲାଭ ନାହିଁକିଛି ।

ନାଟକକୁ ସମସ୍ତେ ଆଦର କରନ୍ତୁ ନକରନ୍ତୁ, ଦୁଃଖିନୀ ତଅପୋଇ ପ୍ରତି ସହାନୁଭୂତି ଦେଖାଇଛନ୍ତି ମୋ ଦେଶବାସୀ । ଓଡ଼ିଆ ପୁଅର ଅତୀତ ଗୌରବର ଏକ ଅଧ୍ୟାୟର ଅତି ସାମାନ୍ୟ ବର୍ଣ୍ଣନାରେ ମୁଗ୍ଧ ହୋଇଛନ୍ତି ସମସ୍ତେ—ଏତିକି ମୋର ଶ୍ରମର ସାଫଲ୍ୟ ।

ମାତ୍ର ପ୍ରଥମ ପ୍ରକାଶବେଳେ ମୋର ଯେଉଁ ସ୍ୱପ୍ନ ଓ କଳ୍ପନାର କଥା ଉଲ୍ଲେଖ କରିଥିଲି—ଆଜି ବି ସେ ସବୁ ସେହିପରି ରହିଛି, ଦେଶବାସୀଙ୍କ ଶୁଭେଚ୍ଛା ବର୍ଷିତ ହେଉ, ସେ କଳ୍ପନା ରୂପାୟିତ ହେଉ—ସେ ସ୍ୱପ୍ନ ସଫଳ ହେଉ !

ବିନୀତ

**ନାଟ୍ୟକାର**

## ସଂକେତ

### ନାଟକାନ୍ତର୍ଗତ କେତେକ ବିଷୟ୍ସ ଓ ଶବ୍ଦ ସମ୍ପର୍କରେ

ଚୀନାକୋଠି—ଚୀନ ଦେଶ ସଙ୍ଗେ ଓଡ଼ିଶାର ବାଣିଜ୍ୟ-ସମ୍ପର୍କ ଥିଲାବେଳେ ଚୀନ୍ ଦେଶୀୟ କେତେକ ବ୍ୟବସାୟୀ ଉତ୍କଳର ପ୍ରଧାନ ବନ୍ଦର-ମାନଙ୍କରେ ବାଣିଜ୍ୟକୋଠି ସ୍ଥାପନ କରିଥିବାର ଇତିହାସ କହେ ।

ଛନୁୟାଁ-ବନ୍ଦର—ବାଲେଶ୍ବରର ଉପକୂଳରେ ପିପିଲି ଓ ବାଲେଶ୍ବର ବ୍ୟତୀତ ସାର୍ଥା, ଛନୁୟାଁ, ଲଇଛମନପୁର, ଚୁଡ଼ାମନ ଓ ଧାମରା ନାମରେ ଅନ୍ୟ ପାଞ୍ଚଗୋଟି ବନ୍ଦର ଥିଲା । ସାର୍ଥା ଓ ଛନୁୟାଁ, ପିପିଲି ବନ୍ଦରର ୧୫ ମାଇଲ ଦକ୍ଷିଣ-ପଶ୍ଚିମରେ ଅବସ୍ଥିତ ।

ଦୀପ-ଆଡ଼ୁଆ-ପାହାଡ଼—ଚିଲିକା ନିକଟରେ 'ଦୀପ-ଆଡ଼ୁଆ' ପାହାଡ଼ ଅଛି । ଏହା ଉପରେ ଗୋଟିଏ ପ୍ରକାଣ୍ଡ ଦୀପ ପଥର ଉପରେ ଖୋଲା ଯାଇଥିଲା । ଏଠାରେ ଦୀପ ଲଗିଲେ ସମୁଦ୍ରଗାମୀ ଜାହାଜକୁ ରାତିରେ ଦେଖାଯାଉଥିଲା ।

ଧରଣୀ— ପ୍ରାଚୀନ ଶିଳ୍ପଶାସ୍ତ୍ର-ବର୍ଣ୍ଣିତ ବିଶେଷ ଲକ୍ଷଣଯୁକ୍ତ ଏକ ଶ୍ରେଣୀୟ ବୋଇତ; ଯାହାର ଲମ୍ବ ୧୭୦ ହାତ, ପ୍ରସ୍ଥ ୨୦ ହାତ ଓ ଉଚ୍ଚତା ୧୭ ହାତ ମାତ୍ର ।

ନଳୀ-ଝୀନ—ପୂର୍ବେ ଉତ୍କଳରେ ଏପରି ସୂକ୍ଷ୍ମ ପାଟ ବସ୍ତ୍ର ପ୍ରସ୍ତୁତ ହେଉଥିଲା ଯେ ୧୬ ହାତ ଶାଢ଼ିକ ମାତ୍ର ଖଣ୍ଡିଏ ବଂଶ-ନଳୀରେ ରଖାଯାଇ ପାରୁଥିଲା । ସେପରି ବସ୍ତ୍ରର କୌଣସି ବିଶେଷ

ନାମ ଖୋଜି ମୁଁ ନ ପାଇବାରୁ ନାଟକରେ ବ୍ୟବହାର ପାଇଁ 'ବଲୀନ୍ଦ୍ରୀନ' ଶବ୍ଦଟି ଉଦ୍ଭାବନ କରିଛୁ ।

ପଦ୍ମାବତୀ—ବୈଦେଶ୍ୱର—ମହାନଦୀ କୂଳରେ ତିନୋଟି ପ୍ରଧାନ ବାଣିଜ୍ୟ- କେନ୍ଦ୍ର ନଗର ଥିଲା; ଯଥା—ବୈଦେଶ୍ୱର, କଣ୍ଟିଲୋ ଏବଂ ପଦ୍ମାବତୀ ।

ବର୍ଗଭୀମା—ବର୍ତ୍ତମାନ ମେଦିନୀପୁର ଜିଲ୍ଲାର ତମଲୁକ୍ ସବ୍‌ଡିଭିଜନ (ପ୍ରାଚୀନ ନାମ ତାମ୍ରଲିପ୍ତ)ରେ ଦେବୀ ବର୍ଗଭୀମାଙ୍କର ବିଖ୍ୟାତ ମନ୍ଦିର ଅବସ୍ଥିତ । ତାମ୍ରଲିପ୍ତ ଦିନେ ଉତ୍କଳର ଅନ୍ତର୍ଗତ ଥିଲା । ଦେବୀ ବର୍ଗଭୀମାଙ୍କର ବହୁକାଳରୁ ପ୍ରସିଦ୍ଧି ଅଛି ।

ବେଗିନୀ—ପ୍ରାଚୀନ ଶିଳ୍ପଶାସ୍ତ୍ର-ବର୍ଣ୍ଣିତ ଏକ ଶ୍ରେଣୀସ୍ଥ ବୋଇତ—ଯାହାର ଲମ୍ବ ୧୭୬ ହାତ, ଓସାର ୨୨ ହାତ, ଉଚ୍ଚତା ୧୮ ହାତ ମାତ୍ର ।

ବାଲିଦ୍ୱୀପର ନୃତ୍ୟ—ତୃତୀୟ ଅଙ୍କ ପ୍ରଥମ ଦୃଶ୍ୟରେ ଦିଆଯାଇଥିବା ନୃତ୍ୟଟି କେବଳ ଅଭିନୟକୁ ସରସ ସୁନ୍ଦର କରିବାକୁ ଯୋଡ଼ାଯାଇନାହିଁ । ତାର ପରିକଳ୍ପନା ପଛରେ ବଲୀଦ୍ୱୀପ ଓ ତାର ସଂସ୍କୃତିର ଇତିହାସ ବିଦ୍ୟମାନ । ଆଉ ସେହି ସଂସ୍କୃତି ସହିତ ଓଡ଼ିଆ ଜାତିର ଯୋଗ ଅଛି ।

"ଭିତରେ ମୂଷା ମାଟି ଭରି, ଉପରେ ଖଇ ଗୋଟି ଗୁରି"— 'ଙ୍କୁଦୁରୁକୁଣୀ', 'ଓଷା' ବା 'ତଅପୋଇ' କାହାଣୀରେ ତଅପୋଇକୁ ତାର ଭାଉଜମାନେ (କେବଳ ସାନଭାଉଜକୁ ଛାଡ଼ି) କପଟ ପାଳୁଥାରେ ଖଇ ଦେଇ ଛେଳି ଜଗିବାକୁ ବଣକୁ ପଠାଇଥିଲେ—ସେହି ସମ୍ପର୍କରେ ବର୍ଣ୍ଣନା ।

ମଡ଼ଗ—ପ୍ରାଚୀନ ଶିଳ୍ପ-ଶାସ୍ତ୍ରବର୍ଣ୍ଣିତ ଏକଶ୍ରେଣୀୟ ବୋଇତ । ଏହା ଅଶୁଭପ୍ରଦ ।

ରଙ୍ଗଡ଼ାଳମ୍ବା ଓ ରାଜରାଣିଆ ଲୁଣ୍ଡା—ଶିଳ୍ପକାର୍ଯ୍ୟରେ ବ୍ୟବହାର ଉପଯୋଗୀ ବିଭିନ୍ନ ପ୍ରକାର ପ୍ରସ୍ତରର ନାମ । ନୀଳଗିରିରେ ଏସବୁ ପ୍ରସ୍ତର ପ୍ରଚୁର ମିଳେ ।

ରାମେଶୁ—ପୂର୍ବେ ଇଜିପ୍ଟ ବା ମିଶର ଦେଶରେ ରାମେଶିସ୍ ନାମକ ଜଣେ ପରାକ୍ରାନ୍ତ ରଜା ଥିଲେ । ବୋଧହୁଏ ସେହି ଦେଶର ଜଳଦସ୍ୟୁମାନଙ୍କ-ଦ୍ୱାରା ରାମେଶିସ୍ ନାମଟି ଭାରତକୁ ଆନୀତ ହୋଇଥିଲା । କାଳକ୍ରମେ ଜଳଦସ୍ୟୁମାନେ ଏ ଦେଶବାସୀଙ୍କଦ୍ୱାରା ରାମେଶିସ୍ ବା ରାମେଶୁ ଆଖ୍ୟା ପାଇଥିବାର ଅନୁମାନ ।

ସୁନାଚ୍ଛନ୍ଦ—"ଏମନ୍ତେ କେତେ ଦିନ ଗଲା, ସାଧବ ଅଧା ଚ୍ଛନ୍ଦେ ମଲା । ମାତା ହିଁ ପୂର୍ଣ୍ଣ ଚ୍ଛନ୍ଦେ ମଲେ, ସମସ୍ତ କୁଟୁମ୍ବ କାନ୍ଦିଲେ ।" ତଥପୋଇ ସୁବର୍ଣ୍ଣର ଚ୍ଛନ୍ଦ ଗଢ଼ିଦେବା ପାଇଁ ବାପ ଆଗେ ଅଳି କରିଥିଲା । ଚ୍ଛନ୍ଦ ଅଧା ଗଢ଼ାହେବାଲକୁ ତାର ବାପ ମଲା । ଚ୍ଛନ୍ଦ-ଗଢ଼ା ସମ୍ପୂର୍ଣ୍ଣ ହେଲା ଦିନ ତାର ମା' ମରିଥିଲା । (ଖୁଦୁରୁକୁଣୀ ଓଷା କଥା)

——

# ଚରିତ୍ର

## ପୁରୁଷ

କୁଳଶେଖର
ରାଜଶେଖର
ଶଶିଶେଖର
ବିଧୁଶେଖର ···ଇତ୍ୟାଦି ସାତସାଧବ—ସାତଭାଇ

ଦାସ ମହାରଣା···ପ୍ରଧାନ ବୋଇତଶିଳ୍ପୀ

ହଂସ ରଥ
କପିଳ ମହାପାତ୍ର
ନାଲୁ ମିଶ୍ର
ମଣିଭଦ୍ର ···ବିଷ୍ଣୁପୁର ଗ୍ରାମବାସୀ

ଧନୁଆ ···ହଂସ ରଥଙ୍କ ପୁଅ

ସୁମନ୍ତ୍ର ···ତାମ୍ରଲିପ୍ତ-ନିବାସୀ ଦୁର୍ଦ୍ଧର୍ଷ ଯୁବକ

ଶୁଭେନ୍ଦୁ ···ସୁଧାର ଭାଇ

ମହେନ୍ଦ୍ର ଗୁପ୍ତ ···ସୁଧାର ପିଉସା

ମାସ୍କାଧର ···ଭାସ୍କରଶିଳ୍ପୀ

ବଲୀ-ଦ୍ୱୀପବାସିଗଣ ଇତ୍ୟାଦି

ଷୋଡ଼ଲ

## ସ୍ତ୍ରୀ

ଉଜ୍ଜ୍ୱଳ
ସୁଭଦ୍ରା
ବିମଳା ···ଇତ୍ୟାଦ ସାତସାଧବର ସାତପତ୍ନୀ
ମାଳେଦ୍ଧ

ତଅପୋଇ ···ସାଧବମାନଙ୍କ ଏକମାତ୍ର ଭଉଣୀ

ଚମ୍ପୀ ···ସାଧବଘରର ଦାସୀ

ରାଧା ···ସୁମନ୍ତ୍ରର ବାଗଦତ୍ତା କ୍ଷତ୍ରିୟ କନ୍ୟା

ବିଧବା ବ୍ରାହ୍ମଣୀ, ଗାଁର ବୋହୂ ଝିଅମାନେ

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ ସୁବର୍ଣ୍ଣରେଖା ନଦୀକୂଳସ୍ଥ ପିପିଲି ବନ୍ଦର । ପ୍ରାଚୀନ ଉତ୍କଳର ବାଣିଜ୍ୟ-ବିଭବ ଯେଉଁ ବନ୍ଦରଟି ଛୁଡ଼ାଦେଇଛି । ନଦୀର ବାଲୁଶଯ୍ୟାରେ ବୋଇତ ତିଆରି ଚାଲିଛି—କେଉଁଟି ପ୍ରାୟ ସମାପ୍ତ, କେଉଁଟି ଅର୍ଦ୍ଧ-ସମାପ୍ତ, କେଉଁଟିର ଆରମ୍ଭ ମାତ୍ର । ସମସ୍ତ ସକାଳ—କାରିଗରମାନଙ୍କ ମଧ୍ୟରୁ ଅନେକେ ଆସି କାମରେ ଲାଗିଗଲେଣି; ବାକି କେତେ ଜଣ ଆସିନାହାନ୍ତି ଏ ଯାଏ । ସମସ୍ତଙ୍କ ତୁଣ୍ଡରେ ଗୀତ—ଗୀତର ଛନ୍ଦେ ଛନ୍ଦେ ହାତୁଆରର ଶବ୍ଦ; ଏକ ଅପୂର୍ବ ଐକ୍ୟତାନ ସୃଷ୍ଟି କରୁଛି ।

ଦାସ ମହାରଣା ଏ ବନ୍ଦରର ପ୍ରଧାନ କାରିଗର । ସେ ଚାରିଆଡ଼େ ବୁଲି କାମ ଦେଖୁଛନ୍ତି । ତାଙ୍କ ହାତରେ ଗୁଡ଼ିଏ ବୋଇତର ନକ୍ସା । ]

ଦଅ ରେ ଖାଇ, ଦଅରେ ଖାଇ, ଦଅ ସହଳେ ଯାଇ,
ଆମ ହାତ କାରିଗରି ଅଲସେ ଯିବ ନା ହାରି ।
ଏଇ ପଟା ଯୋଡ଼ିଯୋଡ଼ି
କୋଟିକମ ତଣ୍ଟି ତ,
ତିଆରୁ ଧାଡ଼ି ଧାଡ଼ି
ଖରି ଖରି ବୋଇତ ରେ
ଖରି ଖରି ବୋଇତ ।
ସାତ ସିନ୍ଧୁ ଖେଦବେରେ ଆମ ଦେଶ ବେପାରୀ ।

କାହିଁ ଲଙ୍କା, କାହିଁ ଚୀନା
କଧଡ଼କେ ଯାଇ ତ
ବାଲ୍-ଯବ-ଦ୍ୱୀପମାଲେ
ଭିଡ଼ବ ଏ ବୋଇତ ରେ
କଣା ବଙ୍କା ଛନ୍ଦି ତ
ସାଉବେ ସାଧବ ପୁଏ, ଯେତ୍କା ସୁଖ ବିସ୍ତର ॥

ଦାସ—(ଡାକଲେ) ଦାମ ! ସାରଥି !
(କାରିଗରମାନଙ୍କ ଭିତରୁ ଜଣେ କହିଲା)—"ସେ ଦୁହେଁ ଆସିନାହାନ୍ତି ।"

ଦାସ—ଏତେବେଳଯାଏ ଆସିନାହାନ୍ତି ? ଉନ ଆଉ କେତେ ଘଡ଼ି ବଢଗଲେ ଆସି କାମରେ ଦେଖାଦେବେ ? ରଘୁନାଥ !

ରଘୂ—(ଦୂରରୁ) ଆଜ୍ଞା !

ଦାସ—ତୁମେ ଆଜ ବଡ଼ ସହଲ ଆସିଚ ଯେ ! ତମ ବୋଇତର ନାମଟି କଅଣ ?

ରଘୂ—ଧରଣୀ ।

ଦାସ—ଦୈର୍ଘ୍ୟ-ପ୍ରସ୍ଥ ଡାକ ।

ରଘୂ—ଲମ୍ବ ୯୬० ହାତ, ପ୍ରସାର ୬० ହାତ, ଉଚା ୯୬ ହାତ ।

ଦାସ—ହଉ, କାମ ଶେଷ ହେଲେ ମୁଁ ଯାଇ ମାପିବ । ସେ ଖଣ୍ଡିକ କାହାର ବରାଦ ?

ରଘୂ—ଯଶୋହର ମହାରଜାଙ୍କର ।

ଦାସ—ହେଉ, ତମେ କାମ କର । (ଆଉ ଜଣଙ୍କୁ ଡାକଲେ) ବଂଶୀଧର ! ବେଣୁଧର ସାଧବଙ୍କ ବୋଇତଟିରେ ଆଉ କଅଣ କାମ ବାକ ଅଛୁ ? ମାସ୍ତୁଲ ପୋତଲଣି ?

ବଂଶୀ—ନା, ଆଜ ପୋତବ ।

ଦାସ—ତମ ସାଙ୍ଗରେ ଆଉ କଏ କଏ ଅଛନ୍ତି ?

ବଂଶୀ—ହର, ଭୁପ, ପିତ, ନବ, ପଦ୍ମ, ସୁମନ୍ତ···

ଦାସ—ସୁମନ୍ତ ! ଓ—ସେଇ ନୂଆ ଲୋକ ? ହଉ, ଟିକଏ ଦେଖିଶୁଣି ତାକୁ ଚଳେଇ ନଉଥିବ । ବୁଦ୍ଧିମାନ୍ ପିଲା—ଜାଣିଗଲେ ଉନ୍ନତି କରିବ ଯେ ! କାହିଁ ସେ ? (ଡାକିଲେ) ସୁମନ୍ତ !

ସୁମନ୍ତ—(ଦୂରରୁ) ଆଜ୍ଞା !

ଦାସ—ଏଣିକି ଆସ—ଶୁଣ ! (ଏଇ ସମୟରେ ଆଉ ଜଣକର କାମ ଉପରେ ନଜର ପଡ଼ିଗଲା ।) ଦେଖ୍ ଗୌରୀ, 'ଘୃତ ଲେପ' ଭଲଭାବରେ ଶୁଖିଗଲାପରେ ଯାଇ ରଙ୍ଗ ଦବୁ, ବୁଝିଲୁ ?

ଗୌରୀ—ଆଜ୍ଞା !

(ସୁମନ୍ତ ଦାସ ମହାରଣାଙ୍କ ନିକଟକୁ ଆସିଲେ । )

ଦାସ—ଦେଖ ସୁମନ୍ତ ! ସାବଧାନରେ କାମ କରିବ । ତମର ବର୍ତ୍ତମାନ ଶିଖିବାର ବେଳ; କାହାର ଉପରେ ବିରକ୍ତ ହେବନାହିଁ । ଥରକରେ କୋଉ କାମ ନ ହେଲା ବୋଲି ଦୁଃଖ କରିବ ନାହିଁ କି ସେ କାମ ଛାଡ଼ିଦେବ ନାହିଁ । ସବୁବେଳେ ନିଘା ରଖି, ଜାଣିବା ଲୋକଙ୍କଠୋଉଁ ପରାମର୍ଶ ନେଇ କାମ କରିବ । ହାତିଆର ଚଳେଇବାବେଳେ ସାବଧାନ ଥିବ । ଶିଳ୍ପକାମ—ସାଧନ ନ କଲେ ତ ହୁଏନା ବାପା ! ବୁଝିଲ ?

ସୁମନ୍ତ—ହଁ !

ଦାସ—ହଉ ଯାଅ—କାମ ଉପରକୁ ଯାଅ !

[ସୁମନ୍ତ କାମଉପରକୁ ଚାଲିଗଲେ—ଦାସ ମହାରଣା ହାତରେ ଧରିଥିବା ନକ୍ସାଗୁଡ଼ିକ ଫିଟେଇ ଗୋଟି ଗୋଟି କରି ପରୀକ୍ଷା କରିବାକୁ ଲାଗିଲେ । କିଛି ସମୟ ପରେ ନିକଟବର୍ତ୍ତୀ ବିଷ୍ଣୁପୁର ଗାଆଁର ପ୍ରସିଦ୍ଧ ଧନୀ ସୌଦାଗର ବେଣୁଧର ସାଧବଙ୍କ ବଡ଼ପୁଅ କୁଳଶେଖର ପ୍ରବେଶ କଲେ । ଦାସ ମହାରଣା ବେଣୁଧରଙ୍କର ସମବୟସୀ ଓ ସଙ୍ଗୀ ଥିଲେ—ସେଥିପାଇଁ ବେଣୁଧରଙ୍କ ପୁଅମାନେ ତାଙ୍କୁ 'ମଉସା' ବୋଲି ଡାକୁଥିଲେ । ]

(କୁଳଶେଖର ପ୍ରବେଶ କରି ଦାସ ମହାରଣାଙ୍କୁ ନମସ୍କାର କଲେ । )

କୁଳଶେଖର—ନମସ୍କାର ମଉସା !

ଦାସ—(ନକ୍ସା ଉପରୁ ମୁହଁ ଟେକି) ଆରେ କୁଳ ! ତୁ କେତେବେଳେ ?

କୁଳ—ଏଇ ତ ଆସି ପହଞ୍ଚୁଚି ମାଉସା ! ଆର ଘାଟଠେଇଁ ଡଙ୍ଗା ବନ୍ଧା ଅଛୁ ।

ଦାସ—ହଉ ! ବସ, ବାପା ବସ୍ ! ବେଣୁଧର ଭାଇ ଗଲାଦନଠୁଁ ଆଉ ତମ ଘରଆଡ଼େ ଯିବାକୁ ମନ ଡାକେ ନାହିଁ । କେତେ ଥର ଭାବଛୁ ଥରେ ଯାଇ ତମମାନଙ୍କୁ ଦେଖି ଆସିବି, ହେଲେ ଗୋଡ଼ ଆଉ ଚଲେ ନାହିଁ; ତେଣିକି, କାମର ଏମିତ ଭିଡ଼ ଯେ, କୁଆଡ଼େ ଟିକିଏ ଯିବାକୁ ବି ତର ହୁଏ ନାହିଁ । ଆଉ ସବୁ ଖବର ଭଲ ତ ବାପା ?

କୁଳ—ହଁ, ବାପା ଗୁଲଗଲା ପରଠୁ ଘର-ବାହାର ସବୁ ଅରମାନ ତ ମତେ ମୁଣ୍ଡେଇବାକୁ ପଡ଼ୁଚି । ସେ ଯେମିତ ଚଉଆଖିଆ ଲୋକ ଥିଲେ ବୋଲି ଯିନା ଏତେ ବଡ଼ କାରବାରର ବୋଝ ହସି ହସି ସମ୍ଭାଳି ନେଉଥିଲେ । ଏଣିକି···(ତାଙ୍କ ଆଖି ଛଳଛଳ ହୋଇଗଲା, ଆଉ କିଛି କହିପାରିଲେ ନାହିଁ ।)

ଦାସ—ତା ସତ ବାପ, ତା ସତ । କଣ କରାଯିବ କହ—ସବୁ ଭଗବାନଙ୍କ ଇଚ୍ଛା—ଯେତେବେଳେ ଯାହା ବରାଦ ଥିବ, ହବ । ସେଥିକି ହାତ କାହାର ?

କୁଳ—କି ଯୋଗରେ 'ସୁନାଗ୍ରହ' ଗଢ଼ିଦେବାକୁ ଅଳ୍ପ କଲୁ ତଥପୋଇ—'ଅଧାଗ୍ରହ'ରେ ବାପା ଗଲେ । ଆଉ ଗ୍ରହ ଯୋଉଦନ ଗଢ଼ାସରିଲା,ଠିକ୍ ସେଇଦନ ମଉସା ! ଠିକ୍ ସେଇଦନ—ବୋଉ···(କଣ୍ଠ ରୁଦ୍ଧ ହୋଇ-ଗଲା, ଆଉ କହିପାରିଲେ ନାହିଁ ।)

ଦାସ—ଆଉ ଆଉ କୁଳ, ସବୁ ଶୁଣିଚ, ମୁଁ ସବୁ ଶୁଣିଚ । ହେଲେ ସେ ସବୁ କଥା ମିଛ ବାପ—ଯିଏ ଯେତେ ଦନପାଇଁ ଆସିଥାଏ—ତା ଖେଳ ସାରି ଚୁଲିଯାଏ । ଆମେ ମିଛରେ ଏଣୁତେଣୁ ଗୋଟାଏ କିଛି ହେଉ ଖୋଜିବସୁ ।

କୁଳ—ହେରୁ ଖୋଜିବା କଥା କହୁନାହିଁ ମଉସା—କହୁଚ ସ୍ୱର୍ଗର ବଗଦ କଥା । ଛାଡ଼ ସେ କଥା, ଏବେ ଆସିଲି ଆମ ବୋଇତଖଣ୍ଡର ଖବର ବୁଝିବାକୁ ।

ଦାସ—ବଣିଜ କରିଯିବ ଏ ସନ ?

କୁଳ—ନ ଗଲେ କଅଣ ଚଳିବ ମଉସା ? ଜାଡରେ ସାଧବ—ବଣିଜଲକ୍ଷ୍ମୀଙ୍କି ଆଶ୍ରା କରି ବଞ୍ଚନ୍ତି—ହେଳାକଲେ ଲକ୍ଷ୍ମୀ କୋପ କରିବେ—ଏ ଜାଡ ମରି ଶୋଇବ ସିନା । ବାପା ଥିଲେ ସେ ସବୁ କଥା ବୁଝୁଥିଲେ, ତନଖି କରୁଥିଲେ—ଆମ ଉପରେ ବୋଝ ନ ଥିଲା କିଛି ।

ଦାସ—ତା' ସତ ବାପା ! ମୁଁ କଅଣ ଜାଣେ ନାହିଁ ? ଏ ଖଣ୍ଡମଣ୍ଡଳରେ ବେଣୁଧର ସାହୁକାରଙ୍କ ନାଁ ପଡ଼ିଥିଲା । କେତେ ବଡ଼ ମୁଣ୍ଡ ଖସିପଡ଼ୁଛି । ଏଣିକି ତୁ ତ ଘରର ବଡ଼ପୁଅ, ବଡ଼ସ୍ୱାଇ—ତତେ ସବୁ ଚପଟ ସମ୍ଭାଳିବାକୁ ପଡ଼ିବ । ହଁ, ତମ ବୋଇତ କଥା ପଚାରୁଥିଲୁ ପରା ? ତୋ ବାପା ତ ସେଗରେ ପଡ଼ିଲାବେଳେ ମୁଁ ଟିକିଏ ଏଣେତେଣେ ହେଲି— କାମ ଟିକିଏ ମାଠେଇ ଯାଇଥିଲା । ଏବେ ଅଳ୍ପ କଅଣ କାମ ବାକି ଅଛି—ହୋଇଯିବ ସେ । ତମେ ସବୁ କେବେ ଅନୁକୂଳ କରିବ କି ?

କୁଳ—ପାଠ ତ କହୁଚି—ଆଷାଢ଼ ସପ୍ତମୀଠଉଁ କାର୍ତ୍ତିକଯାଏ ଉତ୍ତର ବା ପୂର୍ବକୁ ବୋଇତ ମେଲିବ । ଦକ୍ଷିଣ ବା ପଶ୍ଚିମକୁ ଗଲେ କାର୍ତ୍ତିକଠଉଁ ଚୈତ୍ରଯାଏ ଭଲ । ବାପା ଥିଲାବେଳେ ତ ସବୁବେଳେ ଏଇ ଶାସ୍ତ୍ର-ବଚନକୁ ମାନି ଚଳୁଥିଲେ; ଯିଏ ନ ମାନିବ ସେ ଖୁବ ବିରକ୍ତ ହୁଅନ୍ତି । ଗଲାଥର ଏବେ ମୁଁ ତାଙ୍କ କଥା ନ ମାନି ବୋଝେଇ ବୋଇତ ମେଲି-ଦେଲି ଅଘନରେ । ସତକୁ ସତ ଏବେ ଚିଲିକା ବନ୍ଦରଠି ବିକାକିଣା କରିବି ବୋଲି ଯେମିତି ଚିଲିକା-ଭିତରକୁ ପଶି ଆସିଚି ବୋଇତ, 'ଧୀପଅଣ୍ଡିଆ-ପାହାଡ଼'ରେ ନ ଥିଲା ଆଲୁଅ—ବାଜିଲା ପାହାଡ଼ ଦେହରେ ଚପଟ—ବୋଇତଟି ଚଉଖଣ୍ଡି ହେଲା—ସାମଗ୍ରୀତକ ବୁଡ଼ିଗଲା ଚିଲିକା ପାଣିରେ ।

ଦାସ—ଠିକ ଶିଖିଲୁ କହୁ—ତୋ ବାପ ପର ଜାଣିବା ଶୁଣିବା ଲୋକ ଏ ମୁଲକରେ ଦେଖା ନ ଥିଲେ ପରା । ଆରେ, ସେ ତ ବଣିକ କଥା—ତମ ଜାଢ-ପାଠ; ଅମର ଏଇ ଶିଳ୍ପଶାସ୍ତ୍ରର ବ ତାଙ୍କୁ ଢେର୍ ଢେର୍ କଥା ଜଣାଥିଲା । ହଉ, ଫେର୍ କେବକୁ ବାହାରିବାର ଠିକଣା କରୁଚ ?

ବୁଲ—ସେଇ କଥା ପରା ମଉସା, ମୁଁ ଯିନା ଠିକ ଶିଖିଚ । ହେଲେ ଭାଇମାନେ ସେ ସବୁ ଶାସ୍ତ୍ର-ନିୟମ ମାନିବାକୁ ଚାହାନ୍ତି ନାହିଁ ।

ଦାସ—କଅଣ କହୁଚନ୍ତି ସେ ସେମାନେ ? ତୁ ଏବେ ବୁଝେଇଦଉନୁ ?

ବୁଲ—ଜଣେ କିଏ କହୁଚ ଯେ ବୁଝେଇଦେବ ? ମତେ ଛୁଡ଼ିଦେଲେ ବାକ ଛ' ଭାଇଙ୍କର ଛ'ପ୍ରକାର ମତ । କିଏ କହୁଚ ବ୍ରହ୍ମଦେଶ ଯିବା—କିଏ କହୁଚ ଚୀନା ଯିବା—କିଏ କହୁଚ 'ନା-ନା—ଆଗ ଲଙ୍କାଦ୍ୱୀପ, ନ ହେଲେ ଯବ-ସୁମାତ୍ରା ଯିବା ।' ଜାଢ ସାଧବ—ବେଉସା ତ କରିବାକୁ ହବ । ତେବେ କୋଉଥିକ କୋଉ ବେଳଟା ଶୁଭ—ସେଇଟା ତ ଦେଖିବା ଦରକାର । ତା' ଛଡ଼ା ବୋଇତ କାମକି ସରବ—ସାମଗ୍ରୀ କିଛି ଯୋଗାଡ଼ ହବ—ତେବେ ତ ଯାଇ ଅନୁକୂଳ କରିବ । ସେଥିପାଇଁ ଭାବୁଚ କାର୍ତ୍ତିକ ଶେଷକୁ ବାହାରିପଡ଼ିବ । ହେଲେ ସେତେବେଳେ ତ ଆଉ ଉତ୍ତର କି ପୂର୍ବକୁ ଯାତ୍ରା କରିବା ଯୋଗାଡ଼ ନାହିଁ—ଦକ୍ଷିଣଆଡ଼କୁ ଯିବାକୁ ପଡ଼ିବ ।

ଦାସ—ତା' ତ ସତ । ଉତ୍ତର-ପୂର୍ବରୁ ମୌସୁମୀ ଠେଲିବ, ଦକ୍ଷିଣକୁ ବୋଇତ ନ ମେଲି ଆଉ କଣ···ଆଚ୍ଛା, ସାମଗ୍ରୀ କଅଣ ଯୋଗାଡ଼ କଲୁଣି ? କାର୍ତ୍ତିକ ପୂର୍ଣ୍ଣିମା ତ ଆଉ ମାସ ଦ'ଟା ରହିଲା ।

ବୁଲ—ହଁ, ଢଗିରିଆ, ରଣପୁର, କଳାପଥର, ବୈଦ୍ୟେଶ୍ୱରରୁ ଲୁଗା ଆମଦାନୀ କରିବା ପାଇଁ ରାଜ, ବଧୁ, ବ୍ରଜ, ଶଶୀ—ଘରହେଁ ଘରଖଣ୍ଡି ପଟୁଆ ଘିଢ ଯାଇଛନ୍ତି—ଫେରିନାହାନ୍ତି ।

ଦାସ—ଏଥର କଅଣ ଖାଲି ଲୁଗା ?

ବୁଲ—ହଁ, ଲୁଗା ଆଉ କିଛି ହାତିଦାନ୍ତ, ଆଉ କଣ୍ଟିଲେବାସନ ଘରେ ସାଇତା ଅଛି । ବାପା ତ ପଡ଼ିଲେ ଏହ ଦୁଃଖରେ—ତା ପରେ ହେଲା

ତାଙ୍କର କାଳ ? ସ୍ୱା ଭିତରେ ଆଉ ସାମଗ୍ରୀ ଯୋଗାଡ଼ କରିବାକୁ ବେଳ କାହିଁ ?

ଦାସ—ତମ ଗାଁର ସେଇ ବଳରାମ ସାହୁକାର-ଘର—ତମର କଅଣ ବୁଝୁଅନ୍ତି ପରା ସେ ?

କୁଳ—ହଁ, ଆମ କୁଟୁମ୍ବରେ ଦାଦା । ସେମାନେ ବି ଏଥର ସେଇ କାର୍ତ୍ତିକ ଶେଷକୁ ବୋଇତ ମେଲିବେ । ସମ୍ବଲପୁରୀ ଟସର, ନୀଳଗିରି ପଥର-ବାସନ ଆଦି ବହୁତ ବହୁତ ସାମଗ୍ରୀ ଯୋଗାଡ଼ କରିଚନ୍ତି ।

[ ଏହି ସମୟରେ ଦୁଇଜଣ କାରିଗର ପ୍ରବେଶ କରି ଦାସ ମହାରଣାଙ୍କୁ ନମସ୍କାର କରି କରି ଆଡ଼େଇ କାମ ଉପରକୁ ଗ୍ଲଲିଯାଉଥିଲେ । ଦାସ ମହାରଣା ଦେଖିପାରି ଡାକଲେ । ]

ଦାସ—ଦାମ—ସାରଥି—ଶୁଣ !

(ଦୁହେଁ ପାଖକୁ ଆସିଲେ)

ବେଳ କେତେ ହେଲାଣି ? ଦିନ ଦ'ଘଡ଼ିକ ଖ୍ରେଜ ଆସିବ, ନା ?

ଦାମ—ଆଜ ଟିକଏ ଉଛୁର ହୋଇଗଲା···

ଦାସ—ସବୁଦିନେ ତ ଦେଖୁଚ ଏୟା ! ଏଣିକି ଏମିତି କଲେ ଦଣ୍ଡ ପାଇବ । ତମେ ଦହେଁ ଯାଅ—ବଂଶୀଧର ସାଙ୍ଗରେ କାମ କର—କୁଳ-ଘର କାମଟା ତୁଟିଯାଉ ।

(କାରିଗର ଦହେଁ ଗ୍ଲଲିଗଲେ)

ଦାସ—କୁଳ ! ଏଥର କିଛି 'ନଳୀ-ଝୀନ' ବଣିଜ କଲୁ ନାହିଁ—ବିଦେଶରେ ଭଲ କଟିଆନ୍ତା ।

କୁଳ—ହଁ ମଉସା ! ଛେରଷ୍ଟା ସନ ବାପା ଆମର ବହୁତ ନଳୀ-ଝୀନ ନେଇ ବ୍ରହ୍ମଦେଶରେ ବିକଥିଲେ । ତା' ବଦଳରେ ବି ବହୁତ ଗଜ-ମୁକୁତା ଆଉ ଅନେକ ପ୍ରକାରର ଦାମିକା ପଥର ଆଦି ଆଣିଥିଲେ । ଏଥର ମୁଁ ବୁଜ, ବିଧୂ ସ୍ୱା'ଙ୍କୁ ସବୁ କହିଚ—ଯାହା ମିଳିବ ଆଣିବେ ।

ଦାସ—ମାଝ ସବୁ ନଳୀ-ଝୀନ ତ ସମାନ ନୁହେଁ କୁଳ ! ନଳୀ-ଝୀନ ଏମିତ ହବ—ରାତରେ ତାକୁ ଘାସ ଉପରେ ବଛେଇଦବ । ସକାଳେ ଶିଶିର ଯୋଗୁଁ ସେଇ ଝୀନ ଲୁଗା ଯେବେ ଘାସଠଉଁ ବାଣ ନ ହେବ, ତେବେ ଯାଇ ଜାଣିବ ଯେ···

କୁଳ—ଓଡ଼ିଆ ତନ୍ତୀ-ହାତରେ ବୁଣା ନଳୀ-ଝୀନ ସେ !

ଦାସ—ହଁ, ତା ନ ହେଲେ ଏଡ଼ିକ ଖଣ୍ଡେ ବାଉଁଶ ନଳୀରେ ଷୋଳ ହାତ ଶାଢ଼ି କେମିତ ରହନ୍ତା ?

କୁଳ—ବାଙ୍କି, ଦରିଗିଆ, ରଣପୁର, କଳାପଥର—ଏସବୁ ଜାଗାର ନଳୀ-ଝୀନ ସବୁଠୁ ସରସ । କହୁଚ ତ ଭାଇମାନଙ୍କୁ—ଦେଖାଯାଉ, ମା' ମଙ୍ଗଳାଙ୍କ ଇଚ୍ଛା ! ହଉ, ମୁଁ ଉଠିଲି ମଉସା ! ଟିକଏ ଚୀନା-କୋଠି-ଠେଇଁକି ଯିବ । ତା'ହେଲେ ଆମ ବୋଇତଟି··· (ଉଠିଲେ)

ଦାସ—ବେଶିହେଲେ ଆଉ ଦନ ପନ୍ଦରଟି ଲାଗିବ ବାପ ! ଉ ବ୍ୟସ୍ତ ହ'ନା । ଆଉର ଚଞ୍ଚଳ ହୋଇଯାଆନ୍ତା ଯେ—ଏଇ ଦ'ଟା ନକ୍‌ସା ଏଇନେ···
(ହାତରେ ଧରିଥିବା ନକ୍‌ସାକୁ ଦେଖାଇ)

କୁଳ—କାହାର ବଗ୍ରଦ ମଉସା ?

ଦାସ—ମହାରାଜାଙ୍କ ବଗ୍ରଦ । ଡ୍ରମୁ ଚଟାଉ ଯିତ ପଗ୍ର ଖମାରଘରିଆ ଦ'ଦନ ହବ ବସିଚ—ମୋ'ଠୁଁ ଦେଉସ ନେଲେ ଯିବ । (ନକ୍‌ସା ଖୋଲି ଦେଖାଇ) ଏଇ ଦ ଖଣ୍ଡି ବୋଇତ ହବ—ଖଣ୍ଡିଏ 'ସର୍ବମନ୍ଦର' ଆଉ ଖଣ୍ଡିଏ 'ଅଗ୍ରମନ୍ଦର' । ଦୁହିଁଙ୍କର ଜାତ ହେବ କ୍ଷତ୍ରିୟ, ଶ୍ରେଣୀ 'ବେଗିନୀ' ।

କୁଳ—ମାସ୍ତୁଲ ?

ଦାସ—ମାସ୍ତୁଲ ? (ନକ୍‌ସାକୁ ନିରୀକ୍ଷଣ କରି) ବର୍ଣ୍ଣ—ଶ୍ୱେତ, ଅତଏବ ଦୁଇଟି ଲେଖାଏଁ ମାସ୍ତୁଲ । ସୁନା, ରୁପା, ତମ୍ବା,—ଏଇ ତନ ଧାତୁର ପାଢଆ ଲାଗିବ । ରଜାଘର ବଗ୍ରଦ—ବୁଝିଲୁ ପୁଅ—ହଁ ଭରବାକୁ ତ ହବ । ତେବେ ମାସ ଛଅଟି ଲାଗିବ ନିଶ୍ଚେ ।

କୁଳ—ସେ ଯାହାହେଉ, ଆମ ଖଣ୍ଡିକ ଟିକଏ···

ଦାସ—କହୁଲ ପଗ—ଆଉ ଦନ ପନ୍ଦରଟା ଲାଗିବ । କେଇଟା ପାଢ଼ଆ ବସିବ, ଆଉ ରଙ୍ଗ ହବ ।

କୁଳ—ମଧ-ମଢ଼ଗ କଣଚଟି ?

ଦାସ—ତୋ ବାପ ପଗ ବଗଦ କଣଥିଲେ !

କୁଳ—ରଙ୍ଗ କଣ ଦାଉଚ ମଉସା ?

ଦାସ—'ଢ଼ଳ ମାହୁଲ'—ହଲଦଆ ହବ ! ତୋ ବାପ ଥିଲେ ତତେ ବକ-ଆଆନ୍ତେ ରେ କୁଳ, ବକଆଆନ୍ତେ ! ଏତେ ଦନ ବୋଇତ-ବଣିଜ କଲୁଣି—ଏଇ କଥା ପୁଣି ପଗ୍ଉରୁଚୁ ? ହଉ ଆ—ତମ ବୋଇତଟା ଦେଖିଯିବୁ । ତୁ କଅଣ ଆଜ ଗାଆଁକୁ ବାହୁଡ଼ିଯିବୁ ?

କୁଳ—ଆଜ କଅଣ, ଏଇନେ । ଟିକଏ ଚୀନା-କୋଠିଠେଇଁ କାମ ଅଛୁ—ସେଇ ବାଟ ହେଇ ଫେରଯିବ । କୋଉ ଗୋଟାକ ଆମର କହୁଲ ମଉସା !

(ନଗ୍ୟକ୍ଷଣ କଲେ)

ଦାସ—ତେଣିକ ଅଛୁ ତମଟା—ପାଣିକୂଲକୁ ଲଗି; ଦଶୂନାଇଁ ଗଜମୁଖୀଟା ? ତୁ ବାରପାରୁନୁ ପଗ ? ହଉ, ଆ—ଦେଖି ଆସିବୁ ।

(କେତେକ କାରଗର ସ୍ଥା ଭିତରେ କାମ ବନ୍ଦକଣ ବସିଯାଇଥିଲେ । ଦାସ ମହାରଣା ଯାଉ ଯାଉ ସେମାନଙ୍କ ଉପରେ ଦୃଷ୍ଟି ପଡ଼ିଲା ।)

ଦାସ—ଆରେ ଭୂପ, ଜଗ, ରଘୁ—ବସିଗଲ ଯେ ? ତମ ଦେଖାଦେଖି ସଭିଏଁ ବସିଯିବେ । ହାତ ଚଳାଅ ବାପ—ହାତ ଚଳାଅ ।

(କୁଳଶେଖରଙ୍କ ସଙ୍ଗରେ ସେନ ଲୋକଗହଳରେ ପଣି ଅଦୃଶ୍ୟ ହୋଇଗଲେ ।)

ସୁମଲ—(ଆଗକୁ ଆସି) ଭାଇମାନେ ! ଗୀତ ବନ୍ଦ କଲ କାହିଁକ ? ଗୀତ ବନ୍ଦ ହେବାରୁ ହାତ ଚଳୁନାହିଁ—କଅଣ କହୁଛ ରଘୁଭାଇ ?

ରଘୁ—ଠିକ୍ କଥା—ଚାଲୁ ଗୀତ ।

ଅଟ୍ଟାଳି-ମଥାନେ ଚାହିଁ
ଉଡ଼େ ନେତ ମୋହିତ,
କାଠ-ଟେକ ରଖିବ ସେ
ଦୂର ଦେଶେ ଯାଇ ତ ରେ,
ଭଲ ଆମ ବୋଇତ !
ଧନ ହାତେ ସନମାନ ଆଣିବ ରେ ସଜାଡ଼ି ।
ପାଗ ଦେଖି ଘରମୁହାଁ
ଡଙ୍ଗା ଯେବେ ବାହୁ ତ,
ଗାଁ-କୂଳେ ସାଧବାଣୀ
ବସିଥିବ ଚାହିଁ ତ ରେ,
ଆଣିଥିବେ ବସ୍ତ୍ରି ତ……
ନୀଳମେଘୀ ପାଟଶାଢ଼ି ମନଲଖି ତାହାର ॥

[କିଛି ସମୟ ଗୀତ ଭିତରେ ପୂରାଦମ୍‌ରେ କାମ ଚାଲିଲା—ଅନ୍ୟମନସ୍କ ଭାବରେ କାମ କରୁ କରୁ ବାରସିଟା ସୁମନ୍ତ୍ରର ଗୋଡ଼ରେ ବାଜି ପ୍ରବଳ ବେଗରେ ରକ୍ତସ୍ରାବ ହେଲା । ସୁମନ୍ତ୍ର, 'ଓଃ !' ବୋଲି କହି ପଟାତନ୍ ଉପରୁ ଟଳିପଡ଼ିଲା—ଗୀତ ବନ୍ଦ ହୋଇଗଲା—ସମସ୍ତେ "କଅଣ ହେଲା, କଅଣ ହେଲା" କହି ଧାଇଁଲେ । ଦାସ ମହାରଣା ଓ କୁଳଶେଖର ଧାଇଁ-ଆସିଲେ—ଦେଖିଲେ ସୁମନ୍ତ୍ରର ଚେତା ନାହିଁ—ଗୋଡ଼ରୁ ରକ୍ତଧାର ଛୁଟିଛି । କୁଳ ତାଙ୍କ ଚାଦରର ଚିର ପଟି ବାନ୍ଧିବା ପାଇଁ କନା ବଢ଼ାଇଦେଲେ—ପାଣି ପାଇଁ ଦୁ'ଜଣ ଧାଇଁଲେ । ]

ଦାସ—ରକ୍ତଟା ପୁରା ବନ୍ଦ ହେଲା ନାହିଁ—ଆସ୍ତେ ଆସ୍ତେ ଦୁର୍ବଳ ହୋଇଯିବ ଯେ ! ଆଚ୍ଛା ବଂଶୀ, ଏବେ ରହେ କେଉଁଠି ?

ବଂଶୀ—କେଜାଣି, ଆମେ କେହି ଜାଣିନୁ ।

ଦାସ—ବଡ଼ ଆଚମ୍ଭିତ କଥା ! ଏକାସାଙ୍ଗରେ କାମ କରୁଚ···

ବଂଶୀ—କେତେଥର ତାକୁ ପଗ୍ଭରିଲୁଣି—କିଛି କହେ ନାହିଁ—ହସିଦଏ । କହେ ଜଗନ୍ନାଥଙ୍କ ଦେଶରେ କଅଣ ରହିବାକୁ କାଗାର ଅଭାବ ? ଖାଏ କେଉଁଠି, ଚଳେ କେମିତ, କିଛି ଆମକୁ ଫିଟାଇ କହେ ନାହିଁ ।

ରଘୁ—ଦନେ ମୁଁ କାମରୁ ଫେରି ହାଟବାଟ ସାରି ଗାଆଁକୁ ବାହାରିଲ-ବେଳକୁ ରାତ ହୋଇଯାଇଥାଏ । ଆମ ଗାଆଁ ରାସ୍ତା ଆଉ ନନ୍ଦୀପୁର ରାସ୍ତା ଦୋସମାଳଠେଇଁ ଯୋଉ ଭଙ୍ଗା ଦେଉଳଟି ଅଛି—ସେଇ ଦେଉଳ ପାଖରେ ସେଦନ ତାକୁ ଦେଖିଲି । ପଗ୍ଭରିଲି, 'କରେ ସୁମନ୍ତ ! ତୁ ଏଠି ?' ସେ କହିଲା—'ହଁ, 'ଏଇ ମୋର ଘର । ମୁଁ କହିଲି, ଏଇଠି ତେବେ ରହୁ ତୁ ?' ସେ କହିଲା, 'ସବୁଦନେ ନୁହେଁ । ଦନେ ଦନେ ରହେ ।'

ଦାସ—କାହିଁକି କେଜାଣି ତାକୁ ଦେଖି ପହିଲୁ ମୁଁ ସେମିତ କେତେ କଥା ଭାବଥିଲି । ବଦେଶୀ ଲୋକ···

କୁଳ—ବଦେଶୀ ଲୋକ ?

ଦାସ—ହଁ, ତା ନ ହେଲେ ଘର ତ ଥାଆନ୍ତା, ଜଣା ତ ଥାଆନ୍ତା ?

କୁଳ—କାତ ?

ଦାସ—ତା ବି ଜଣାନାହିଁ । ବହୁତ ଦୋ-ଦୋ ପାଞ୍ଚ ହେଇ ମୁଁ ତାକୁ କାମ ଦେଇଥିଲି ।

କୁଳ—ଦେଖିବାକୁ ସୁନ୍ଦର ପିଲଟିଏ ତ !

ଦାସ—ବୁଦ୍ଧିଶୁଦ୍ଧି ବେଶ୍ ଅଛି । ପାଠଶାଠ ବି ପଢ଼ିଚ ଭଲ—ବାକି···

(ଶୁଶ୍ରୂଷା ବଳରେ ସୁମନ୍ତର ଚେତା ଫେରିଆସିଛି, ମାତ୍ର ରକ୍ତସ୍ରାବ ହେଉ ଦୁର୍ବଳ ହୋଇପଡ଼ିଚ—ଯନ୍ତ୍ରଣା ବି ହେଉଚ—ଉଠିପାରୁନାହିଁ ।)

ସୁମନ୍ତ—ଓଃ—ଓଃ—ଓଃ !

ଦାସ—କଅଣ କଷ୍ଟ ହଉଚ ବାପ ? କଅଣ କରାଯିବ କୁଳ ? ଆଚ୍ଛା, ଆମର ଏଇ ସହର ଭିତରେ କୋଉଠି···

ରଘୁ—ଏଠି ତ କେହି ରହିନ୍ତି ନାହିଁ, ସନ୍ଧ୍ୟାଁ କାମ ସରିଲେ ଗାଆଁମାନଙ୍କୁ ବାହାରିଯାଆନ୍ତି ।

କୁଳ—କିଛି ଚିନ୍ତା ନାହିଁ, ୟାଙ୍କୁ ଧରାଧରି କରି ଆମ ଡଙ୍ଗାରେ ଶୁଆଇଦିଅ—ମୁଁ ଏଇକ୍ଷଣି ନାଆ ମେଲିଦେବି—ସଞ୍ଜକେ ଘରଠି ପହଞ୍ଚିଯିବ । ଆମ ଘରେ ତ ଆଉ...

ଦାସ—ନା—ନା—ଆଉ ଚିନ୍ତା କଅଣ ? ଦିଅ ତେବେ ଉଠାଅ, (ଉଠେଇଲେ) ହଁ। ହଁ।—ଧୀରେ ।

ରଘୁ ଓ ବଂଶୀ—ଧୀରେ—ଧୀରେ ।

(ସୁମନ୍ତଙ୍କୁ ଟେକାଟେକି କରି କାରିଗରମାନେ ନେଇଗଲେ । ଦାସ ମହାରଣା ଓ କୁଳଶେଖର ପଛେ ପଛେ ଗଲେ ।)

## ଦ୍ୱିତୀୟ ଦୃଶ୍ୟ

[ ପିପିଲି—ବନ୍ଦର-ରାସ୍ତା । ସନ୍ଧ୍ୟା ହୋଇଆସୁଛି । ହାଟ-ବାଟ ସାରି ବୃଦ୍ଧ ହଂସ ରଥେ ଓ କପିଳ ମହାପାଡେ ଗାଁକୁ ଫେରୁଥିଲେ । ହଂସ ରଥ ବଡ଼ବୋଲ—ଭାରି କୃପଣ । ସେ ତରତର ହୋଇ ଆଗେ ଆଗେ ଚାଲିଆଆନ୍ତି । ]

କପିଳ—ଅଜା ! ହୋ ଅଜା !

ହଂସ—(ଅଟକି) ହଇ ! କଅଣ କହୁଚୁ ନାତି ?

କପିଳ—କାହିଁକି ଏତେ ତରତର ?

ହଂସ—ଓ...!

କପିଳ—ମୁଁ ବୋଇଲି କି କାହିଁକି ଏତେ ତରତର ?

ହଂସ—ରାତି ଆଗରୁ ଗାଁରେ ପହଞ୍ଚିବାଟି ?

କପିଳ—ଆହେ, ହଉ ରାତି—ଆମେ ତ ଦି'ଜଣ ଅଛେଁ ! ହାଟବାଟ ସାରି ଥକିଯାଇଥାଇଁ—ଏବେ ଏଠି ଟିକିଏ ବସ । ଜଳପାନି ରକମ କଅଣ ବାନ୍ଧିଚ କାହିଁ ।

ହଂସ—କଅଣ କହୁଲୁ ନାଥ ?

କପିଲ—ଜଲପାନ ! ଜଲପାନ !! ବାନ୍ଧଥିଲ ପଗ୍ର ? କଅଣ ହେଲ୍ ?

ହଂସ—(ଶୁଣି ନ ଶୁଣିଲା ପରି) କଥା କଅଣ କ, ବ୍ରାହ୍ମଣୀ—ତୋ ଆଈ ଦେଖିଲା—ଜାଣିଲୁ ?

କପିଲ—ଅଜା !

ହଂସ—ଓ ! କଅଣ କହୁଚୁ ?

କପିଲ—ଆଜ୍ଞେ, ମୁଁ କହୁଚି ଏଇଠି ଟିକଏ ବସି ଜଲପାନ ମୁଠିଏ ମୁଠିଏ ଖାଇବା । କଅଣ ବାନ୍ଧିଚ କାଢ଼ !

ହଂସ—ସେଥ୍ପା କହୁଚ ପଗ୍ର ! ତୋ ଆଈ ଦେଖିଲା—ସପନ ଦେଖିଲା···

କପଲ—ହୁଁ, ଜଲପାନ କାଢ଼ିବା କଥା ପଡ଼ିଲାରୁ ଆଈ ସପନ ଦେଖିବା କଥା ମନେପଡ଼ୁଚି ବୁଢ଼ାର (ହଂସ ରଥଙ୍କୁ) ବସ—ବସ—ବସିଲ ।

(ହଂସରଥଙ୍କୁ ହାତ ଧରି ବସେଇଲା)

ହଂସ—ହେଇଟି ନାଥ ! ରାତିଅଧରେ—ଜାଣିଲ—ଗୋଟିଏ ସପନ ଦେଖିଲା ତୋ ଆଈକୁଆଡ଼ୁ ଗୋଟାଏ ଭୟଙ୍କାରିଆ ଜୀବ ଆସି ତା ଆଗରେ ଠିଆହୋଇଗଲା । ହେଇଟି ନାଥ !—ହଳଦିଗଣ୍ଠି ବର୍ଣ୍ଣ—ଲମ୍ବା ଲମ୍ବା ହାତୀଶୁଣ୍ଢ ପରି ଗୋଡ଼ ଦି'ଟା, ମୁହଁଟା ସେମିତି ବୋଇତ କଖାରୁ—ଆଉ ମୁଣ୍ଡଟା ଗୋଟା ଛତା ପରି !

କପିଲ—ସତେ ! ସତେ ! ଆଉ ଆଖି ଦି'ଟା ଅଜା ?

ହଂସ—ଆଖି ? ଆଖି ତ ସେମିତି ଦି'ଟା ମଶାଲ !

କପିଲ—(ଛଳନା କରି) ଅଜା, ମତେ ଭାରି ଡରମାଡ଼ୁଛୁ !

ହଂସ—ଓ ?

କପିଲ—(ଥରି) ମ-ତେ ଭଆରି' ଇ'—ଡର ଅ'···

ହଂସ—ଡରୁଚୁ ? ଡର କଅଣ ନାଥ । ସତେ କଅଣ ଏମିତିକଥା ଜୀବ ଅଛନ୍ତି ଦୁନିଆରେ ?

କପିଲ—କେଜାଣି କାଲେ ଥିବ ଅଜା !

ହଂସ—ଥିବେ ? ସତରେ ଥିବେ ?

କପିଳ—ଅଛନ୍ତ୍ର ଅଜା ଅଛନ୍ତ୍ର, ଚନା, ସାଇବଗୁଣ୍ଡଙ୍କୁ ଦେଖୁନ ? ଅବିକଳ
ଏଇମିତ ! ମତେ ଖାଲି ଡରମାଡ଼ୁଚ ଅଜା ! ଖାଲି ଡର ।

(ବେଣି ଅଣାଇ)

ହଂସ—ହାଁ—ହାଁ—ସ୍ୱେ କ'ଣ ନାତ ? ଗୁଲ—ଗୁଲ ଗାଁକୁ ପଳେଇବା
ଗୁଲ ।

କପିଳ—ଯାଇପାରିବ ନାହିଁ ଅଜା—ଯାଇପାରିବ ନାହିଁ !

ହଂସ—ଓଃ ?

କପିଳ—(ଠାରି ଜଣେଇଦେଲା ଯେ ସେ ଯାଇ ପାରିବ ନାହିଁ ।) ଓ ହୋ—
ଗଲା । ଗଲା—ତଣ୍ଟି ଶୁଖିଗଲା ।

(ପଡ଼ିଯାଉଥିଲା, ହଂସ ରଥ ବହୁକଷ୍ଟରେ ଧରିପକାଇଲେ ।)

ହଂସ—ଆରେ, ଏ ବାଟଟାରେ ଏମିତ···

କପିଳ—ଖା—ର—ଶୋ—ଷ—ଅ

(ଅଣ ଅଣ ହଂସ ରଥଙ୍କ ବୋକଗ୍ଣ ଉପରେ ମୁଣ୍ଡ ଦେଇ
ଶୋଇପଡ଼ିଲା ।)

ହଂସ—(ବ୍ୟସ୍ତ ହୋଇ) ନାତ ! ରେ—ନାତ ! ଓଃ—କଅଣ କରିବ ଏବେ,
ଏଇ ବାଟଟାରେ ! କଅଣ ହଉଚ ?

କପିଳ—(ଠାରି ଜଣେଇଦେଲା ତାକୁ ଶୋଷ ହେଉଚ ।)

ହଂସ—ଓଃ—କଅଣ କରିବ ଏବେ ? ଏଠି ପାଣି ପାଉଚ କୋଉଠି,
ଥୋଡ଼ାଏ ବାଟ ଫେରିଲେ ତ ! (ଯାଉ ଯାଉ ଫେରି) ବୋକଗ୍ଣଟା
ମୋର ! ହଉ ଥାଉ, ନାତର ତ ହୋସ ନାହିଁ—ଥାଉ—ଓଃ, ଆଛା
ଅଡ଼ୁଆରେ ପକେଇଲା ମଣିଷକୁ ।                    (ପ୍ରସ୍ଥାନ)

କପିଳ—(ଗ୍ଣହିଁଲା—ବୁଢ଼ା ଗୁଲଗଲାଣି ) ଓହୋ ! ପେଟଜଳିଲାଣି ଖୋକରେ !!
ଆଛା ଗଣ୍ଡିଆ ହାତୁଡ଼େ ପଡ଼ିଲ ! ଯାଇଛୁ ଏଥର ବୁଜୁଲ ଗ୍ରୁଡ଼—
ଓହୋ ! ଜଳପାନ କଥା କହିଲାରୁ ମତେ କହୁଚ "ତୋ ଆଉ ସପନ
ଦେଖିଲ !" କମ୍ ସିଆଣା କ ! ଦେଖେଁ କଅଣ ରଖିଛୁ ବୁଢ଼ା ।

( ଭୃକୁଳା ଖୋଲ୍ କଲଟିଆ ଖାଇଲା । କିଛି କ୍ଷଣ ପରେ ଦେଖିଲା ହଂସ ରଥ ଆସୁଛନ୍ତି । ଭୃକୁଳାଟା ବାଛଦେଇ ଯେମିତ ଶୋଇଥିଲା ସେମିତ ଫେର୍ ଶୋଇପଡ଼ିଲା । ହଂସ ରଥ ପାଣି ଯେନ ପ୍ରବେଶ କଲେ । )

ହଂସ— ନାଡ ! ରେ ନାଡ ! ନେ, ପାଣି ନେ ।

( ପାଣି ଦେଲେ ଓ ବଞ୍ଚିଲେ—କପିଳ ଆଖି ମେଲି ଗ୍ଭହିଁଲା )

ହଂସ—କଅଣ ଟିକଏ ଭଲ ଲାଗୁଛି ନାଡ ?

କପିଳ—ହୁଁ ।

ହଂସ—ହଉ ତେବେ ଉଠ୍—ଯିବାଗ୍ଭଲ ଗୋଟିଏ ଗୋଟିଏ ।

କପିଳ—ଅଜା ! ବଟୁଆ ରଖିଚ ପର୍ସ ? କାଢ—ପାନ ଖଣ୍ଡିଏ ଖଣ୍ଡିଏ କରବା !

ହଂସ—ଓଃ··· ।

କପିଳ—ବଟୁଆ । ବଟୁଆ ।

ହଂସ—ହିଁ, ଏଇ ପିପିଲରେ ଭଲ ନକହାରେ ଛଆରନ୍ତି ବାପ !

କପିଳ—କଅଣ ଛଆରନ୍ତି ଅଜା ?

ହଂସ—ବଟୁଆ ପର୍ସ ! ଗ୍ଭଲ—

କପିଳ—ଆହେ ସେ କଥା କହୁନାହିଁ—ପାନ ! ପାନ !

ହଂସ—ହିଁ, ପାନ-ଗୁଆ ରଖିବାକୁ ନୁହେଁ, ଆଉ କଅଣ ! ହେଲେ ଏଠି ଗୁଆ ସେମିତ ଭଲ ମିଳେନାହିଁ । ଗ୍ଭଲ୍—ଗ୍ଭଲ୍ ବାପ ! ବାଟଯାକ କଥା ହେଇ ହେଇ ଯିବା ।

କପିଳ—(ମନକୁ ମନ) ଆଚ୍ଛା ହଉ ! ରହିଥା ବୁଢ଼ା, ତତେ ଦେଖୁଚ— (ବୁଢ଼ାକୁ) ଆସ !

ହଂସ—ହଇରେ ନାଡ, ଏମିତକଥା ଜବ କଅଣ ଦୁନିଆରେ ଅଛନ୍ତି ?

କପିଳ—ନାହାନ୍ତି ଅଜା ।

ହଂସ—ଆଉ ତୁ ଡରିଲୁ ?

କପିଳ—ମୁଁ ଡରନାହିଁ ଅଜା, ମିଛରେ ସେମିତ ଛଟା ଗାଳୁଥିଲି; ତମ ବୁଜୁଲା ଫିଟେଇ ଜଳପାନତକ ଖାଇବ ବୋଲି ।

ହଂସ—(ବୁଜୁଲା ଦେଖି) ଏଁ ! କଅଣ କଲୁରେ···

( ବସିପଡ଼ିଲେ ମୁଣ୍ଡରେ ହାତଦେଇ । )

କପିଳ—(ହସି) ଆହେ, ଆସ ଅଜା । ଘର ଆଗରୁ ଗାଁରେ ପହଁଚିବାକି !

ହଂସ—ଆଉ ଗାଁକୁ କାହିଁକି ଫେରିବ ? କଅଣ କଲୁରେ !!

କପିଳ—ଆସ-ଆସ ? (ବୁଢ଼ାକୁ ଟାଣିନେଇ ଚାଲିଗଲା ।)

## ତୃତୀୟ ଦୃଶ୍ୟ

[ ବେଣୁଧର ସାହୁକାରଙ୍କ ଗୃହ—ଦ୍ୱିତଳ ପ୍ରାସାଦ ଓ ତତ୍‌ସଂଲଗ୍ନ ଛାତର କେତେକାଂଶ ଦୃଶ୍ୟ । ତଳେ ବିସ୍ତୃତ ପ୍ରାଙ୍ଗଣ—ଗୋଟିଏ ପାଖରେ ଦ୍ୱାର—ଦ୍ୱାରଟି ରୁଦ୍ଧ—ଆର ପାଖରେ ପ୍ରାଙ୍ଗଣର କେତେକାଂଶ ମଧ୍ୟ ଦୃଶ୍ୟ ।

ଛାତର ପଶ୍ଚାତ୍‌ଦେଶରେ ନିର୍ମଳ ଆକାଶ—ତହିଁରେ ଶୁକ୍ଳ ଦଶମୀର ଚନ୍ଦ୍ର—ଛାତର ବାଡ଼ଟି ଧରି ଚନ୍ଦ୍ର ଆଡ଼କୁ ଚାହିଁ ଗୀତ ଗାଉଛି ବେଣୁଧରଙ୍କ ଅତି ଆଦରର କନ୍ୟା ତଅପୋଇ । ]

କି ହେଲାରେ, କହିବ କେ' ଖୋଲି,
ଚାହିଁଲେ ଭୁରୁ ନସଚ, ନ ଚାହିଁ ବାଉଲି ॥
ଭାବ ନ ଆଇ ଭାବନା-ଭାର କରଇ ବଶ।
ସଙ୍ଗ-ପ୍ରସଙ୍ଗେ ବିମୁଖ, ନିଃସଙ୍ଗେ ସୁଖ ଜଣା,
କି ହେଲାରେ, କହିବ କେ' ଖୋଲି ॥
ଚୁମ୍ବିଲେ ଚାରୁ ଚନ୍ଦ୍ରିକା, ଚକୁଆ ମନେ ଦକା
ଲୁଚଲେ ସେ ନଶିପତି, ଧୃତି-ଧାରଣେ ଶଂକା,
କି ହେଲାରେ, କହିବ କେ' ଖୋଲି ॥

କଣା ନ ଥିଲା ଜନକୁ ଜଣାଇଲା ସେ କଏ ?
ବଳି ଯିବାର ବଳକୁ କପି କଷଣ ଦଏ,
କ ହେଲରେ, କହୁବ କେ' ଖୋଲି ॥

(ଅଡ ସନ୍ତର୍ପଣରେ ଦ୍ୱିତଳସ୍ଥ କକ୍ଷ ଭିତରୁ ତଅପୋଇର ସାନଭାଉଜ ମୀଳେନ୍ଧ ଆସି ତଅପୋଇର ଆଖି ଚିପିଧରିଲା । )

ତଅପୋଇ—ଆରେ ଗ୍ରୁଡ଼ ଗ୍ରୁଡ଼, ଭାସ୍ୱ ସିଆଣି ! ମୁଁ ଯେମିତ ଜାଣିନାହିଁ ! ଗ୍ରୁଡ଼ ମ ନୂଆଭାଉଜ !

ମୀଳେନ୍ଧ—ହୂଃ-ହୂଃ-ହୂଃ—(ଆଖି ଗ୍ରୁଡ଼ି ଦେଇ) କେବେ ଛୁଅ ଭଉଣୀ ! ଆଜ ବଗିଚୁଆଡ଼େ ନ ଯାଇ···

ତଅପୋଇ—ଏକା କଅଣ ଯାଇଥାନ୍ତି ? ରୂ ତ ହାଣ୍ଡିଶାଳେ ରହୁ ପିଠା ଗଢ଼ିଲୁ !

ମୀଳେନ୍ଧ—ଆଜ ପରା ଗେଲ୍ହା ନଣନ୍ଦଙ୍କ ଜନ୍ମଦନ !!

ତଅପୋଇ—ଜାହିଁକ, ଛଅ ଭାଉଜ ବସି ପିଠା ଗଢ଼ିଥାନ୍ତେ, ରୂ ସେ ପାଖରେ ଥାନ୍ତୁ !

ମୀଳେନ୍ଧ—କେବେ ବାହା ହେଇଗଲେ କଣ ମତେ ଯୌତୁକ ନବୁ କ ?

ତଅପୋଇ—ଚୂପ୍ !

(ଏହ ସମୟରେ ତଳେ ଅଗଣା ଭିତରକୁ କୁଳଶେଖର, ବଧୂଶେଖର ଓ ସୁମନ୍ତ୍ର ପଶିଆସୁଥିବାର ଦେଖିପାର ମୀଳେନ୍ଧ ତଅପୋଇକୁ ରୁନହେବାକୁ ଠାରଦେଇ ନଜେ କକ୍ଷ ଭିତରକୁ ଅପସରଗଲା । ତଅପୋଇ ସେହପର ସେଠି ଛିଡ଼ାହୋଇ ରହଲା । ତଜୁ ଏମାନେ କେହ ତାକୁ ଦେଖିପାରଲେ ନାହିଁ । )

କୁଳ—(କହ କହ ପ୍ରବେଶ) ତେମେ ବୃଥାରେ ଫେରଯିବାକୁ କହୁଚ ସୁମନ୍ତ୍ର; କୁଆଡ଼େ ଯିବ ?

ସୁମନ୍ତ୍ର—(ପ୍ରବେଶ କର) ଅନେକ ଦନ ହେଲ କାମ ମାସହେଲଣି, ଦାସ ମହାରଣା ଭାର ବରକ୍ତ ହେଉଥିବେ ।

କୁଳ—(ହସି) ଓ, ବାଳ ସେ ବାର୍ଦ୍ଧୀ-ହଣା, ମୁଗୁର-ପିଟା କାମ ତ ତମ
ହାତେ ହବ ନାହିଁ । ସେତେବେଳେ କ୍ଷତ୍ରିୟ ପିଲା !

ସୁମନ୍ତ—(ବିଚଳିତ ହୋଇ) ନାଁ ନା···

କୁଳ—ମୁଁ ଜାଣେ ଭାଇ, ଜାଣେ ; ରୋଗରେ ପଡ଼ିଥିଲାବେଳେ ତମେ ତମ
ଗାଁ ନାଁଟା କହିପକେଇଥିଲ—ତାମ୍ରଲିପ୍ତର କୋଦଣ୍ଡପୁର—ମୁଁ
ଶୁଣିଚି —ତାମ୍ରଲିପ୍ତର ପ୍ରତ ମଉଜା, ପ୍ରତ ଗାଁ ମତେ ଜଣାଅଛି ।
ତା ଛଡ଼ା ମୁଁ ବି ଏଥିଭିତରେ ଖବର ନେଇ ବୁଝିଛି—ତମେ ପ୍ରକୃତରେ
କ୍ଷତ୍ରିୟ ।

ବଧୂ—(ସୁମନ୍ତଙ୍କୁ) ଏଥର ହେଲା ତ !

କୁଳ—ଖାଲି କ୍ଷତ୍ରିୟ ନୁହେଁ ବଧୂ, ସୁମନ୍ତ ରାଜବଂଶୀ ! ତୁ ହୁଏତ ଜାଣିନୁ
ସେ ଇତିହାସ ବଧୂ ! ବହୁ ବର୍ଷ ତଳେ ତାମ୍ରଲିପ୍ତରେ ମୟୂରଧ୍ୱଜ
ରାଜାମାନେ ରାଜପଣ କରୁଥିଲେ । ଥରେ କାଳୁରାୟ ବୋଲି ଜଣେ
ଓଡ଼ିଆ ଧୀବର ଦଳବଳ ସଙ୍ଗରେ ଯାଇ ସେ ରାଜ୍ୟ ଉପରେ ଚଢ଼ାଉ
କଲା । ରାଜାଙ୍କୁ ତଡ଼ି ସେଠି ସେ ନିଜେ ରାଜା ହୋଇ ବସିଲା ।
ରାଜବଂଶ ଲୋକେ ଡରରେ ଯେ ଯୁଆଡ଼େ ପଳାଇଯାଇ ଆତ୍ମରକ୍ଷା କଲେ ।
ହୁଏତ ସେଥିଭିତରୁ କେତେଜଣ ସୁମନ୍ତର ଗାଁ—ସେଇ କୋଦଣ୍ଡ-
ପୁରରେ ଯାଇ ଆଶ୍ରୟ ନେଇଥିଲେ ।

ବଧୂ—ସୁମନ୍ତ ତେବେ ତାଙ୍କର···

କୁଳ—ତାଙ୍କର ବଂଶଧର ବଧୂ, ତାଙ୍କର ବଂଶଧର ସେମାନେ । କ୍ରମେ କ୍ରମେ
ଗରିବ ହୋଇଯିବାରୁ ସେମାନଙ୍କର ଖବର ଆଉ କେହି ରଖିଲେ ନାହିଁ,
ବଂଶ-ମର୍ଯ୍ୟାଦା ବି ହରେଇଲେ ସେମାନେ ।

ବଧୂ—(ଆନନ୍ଦରେ ସୁମନ୍ତଙ୍କୁ ଆଲିଙ୍ଗନ କରି) ସୁମନ୍ତ ତେବେ କ୍ଷତ୍ରିୟ—
ରାଜବଂଶୀ !!

(ଛାତ ଉପରୁ ତଅପୋଇ ଅଦୃଶ୍ୟ ହେଲା)

କୁଳ—ଖାଲି ସେତିକି ନୁହେଁ ବଧୂ, ସୁମନ୍ତ ଆମର ଭାଇ !

ସୁମନ୍ତ୍ର—ହେଲେ ବଡ଼ବାଇ ! ମୁଁ ଗରିବ, ଦୁନିଆରେ ସମ୍ବଳ ମୋର କିଛି ନାହିଁ ! ବାପା ମା'ଙ୍କୁ ହରାଇ ମୁଁ ଆଜି···

ବିଧୂ—ଆଉ ଆଉ, ଆଉ ଏତେ ବକ୍ତୃତା ଦେଇ ଆମର ମନ ବଦଳାଇବାକୁ ଚେଷ୍ଟା କରନା । ତେମେ ଗରିବ, ଅନାଥ; ତମର ଘର ନାହିଁ, ଦ୍ୱାର ନାହିଁ—ଷର୍ଣ୍ଣ ସ୍ତ୍ରୀ ହୋଇ ଆଜି ବଡ଼େଇ କାମ କରିବାକୁ ଆଗଭର—କହିଯାଅ—କହିଯାଅ ।

ସୁମନ୍ତ୍ର—ନା—ନା ସାନବାଇ, ମୁଁ କହିବାକୁ ଯାହେଁ···

ବିଧୂ—ଯେ ଆମର ସ୍ନେହଶ୍ରଦ୍ଧା ତମକୁ ପିତା ଲାଗୁଛି, ଆମ ଘରେ ରହିବାଟାକୁ ତମେ ପସନ୍ଦ କରୁନା । ଅଥଚ, ମହାଶୟ ! ସନ୍ତାନବେ ପୁରୁଷରୁ ଯୋଉ ହାତ ଖଣ୍ଡା-ତରଓ୍ୱାଲ ଖେଳେଇ ଆସିଛି, ସେଇ ହାତରେ ଏଇନେ ନହାଣ ମୁଗର ଶୋଷି ପାଇବାଟାକୁ ଆପଣ ପସନ୍ଦ କରନ୍ତ !! ଯୋଉ ବାଟ ତମର ନୁହେଁ—ତମେ ସେଇ ବାଟ ଧରି ଭୁଲ କଲ ବାଇ !

ସୁମନ୍ତ୍ର—ମତେ ଏଇନେ କଅଣ କରିବାକୁ କହୁଚନ୍ତି ?

କୃଳ—ତମେ ପାଠ ପଢ଼ିଚ, ତମର ବୁଦ୍ଧି ଅଛି, ତେଜ ଅଛି—ତମପରି ଲୋକଟିଏ ଆମର ବଡ଼ ଦରକାର । ଆମର ଭାଇ ହେଇ ଏଇ ଘରକୁ ଆପଣାର କରି କଅଣ ଏଇଠି ରହିପାରିବ ନାହିଁ ?

(ଏଇ ସମୟରେ ବ୍ୟସ୍ତଭାବେ ଡାକ ଡାକ ଧାଇଁ ଧାଇଁ ପ୍ରବେଶ କଲେ ନାଲୁ ମିଶ୍ରେ । ନାଲୁ ମିଶ୍ର ସେଇ ଗାଆଁର ଲୋକ, ସାହୁକାର ପରିବାରର ହିତାକାଙ୍‌କ୍ଷୀ । )

ନାଲୁ—କାହାନ୍ତି ସାହୁକାରେ, କାହାନ୍ତି ?

ବିଭୂ—କଅଣ ମିଶ୍ରେ ?

(ଗ୍ରନ୍ତ ଉପରେ ତଥପୋଇ ପୁଣି ଦେଖାଦେଲା ।)

ନାଲୁ—ମୁଁ ଯାଇଥିଲି ପିପିଲି-ବଜାରକୁ—ନଈ ବନ୍ଧେ ବନ୍ଧେ ତ ଫେରୁଚ—ଆମ ଗାଁ-ମୁଣ୍ଡ ଘାଟଠେଇଁ ହେଇଚ—ନଈ ଆରପାରି ଯୋଉ ମଗରବୁଢ଼ା ଗଣ୍ଡଟା ନାହିଁ, ସେଇଠି ଡାକ ଶୁଭିଲା 'ଗଲି' 'ଗଲି' 'ଗଲି' ! ମୁଁ ଯାହିଁ ଦେଖେ ତ ଗୋଟାଏ ମସ୍ତବଡ଼ ବୋଝେଇ ପଟୁଆ

କାହାର ବୁଡ଼ିଯାଉଚ । ଲୋକବାକ-ତଣ୍ଡେଲ-ଆଦି ସଭିଏଁ ପାଣି ଭିତରେ ଛଟପଟ ହେଉଛନ୍ତି; ଗଣ୍ଡରେ ତ ଅକାତ-କାତ ପାଣି—ହଲେଇ ପକାଉଚନ୍ତି ଲୋକେ ! ମୁଁ ଆମ ଘରଆଡ଼େ ନ ଯାଇ ଏକ-ମୁହାଁହୋଇ ଧାଇଁଚି—ଭାବିଲି କାଲେ ଆମ ସାହୁକାରଙ୍କ ପଟୁଆ ହୋଇଥିବ !

କୁଳ—ନା, ମା ମଙ୍ଗଳାଙ୍କ ଦୟାରୁ ଆମ ପଟୁଆ ଘରଖଣ୍ଡି କାଲି ଶୁଭେ ଶୁଭେ ବାହୁଡ଼ି ଆସିଛୁ ।

ବଧୂ—ଭାଇ, ଆମ ବଳି ଦାଦାଙ୍କର ହୋଇଥିବ କାଲେ ? ସାମଗ୍ରୀତକ ତ ଗଲା, ହୁଏତ ଲୋକବାକ ବି···

ନାଲୁ—ଘୋର ଗଣ୍ଡ ! ଲୋକବାକ ସଭିଏଁ ଉଦ୍ଧାର ପାଇବେ କି ନାହିଁ କେଜାଣି !!

ସୁମନ୍ତ—ତମେ ଆସ ମିଶ୍ରେ ମୋ ସାଙ୍ଗରେ—ଲୋକଙ୍କ ଜୀବନ ତ ରକ୍ଷା କରିବାକୁ ହେବ ! (ଯିବାକୁ ଉଦ୍ୟତ)

କୁଳ—ତମେ କୁଆଡ଼େ ଯିବ ସୁମନ୍ତ ! ଏବେ ଏତେ ବଡ଼ ଆଘାତରୁ ଉଠିଚ !

ସୁମନ୍ତ—ମୁଁ ଆସୁଚ ଭାଇ ! ଆସ ମିଶ୍ରେ—

(ନାଲୁ ମିଶ୍ରଙ୍କୁ ଟାଣିନେଇ ଚାଲିଗଲେ)

ବଧୂ—ଆରେ, ସୁମନ୍ତ ! ସୁମନ୍ତ !

କୁଳ—କ୍ଷତ୍ରିୟ-ରକ୍ତ; ବୁଝିଲୁ ବଧୂ—କ୍ଷତ୍ରିୟ-ରକ୍ତ କି ନା !!

ବଧୂ—ତା' ସତ ଭାଇ ! ହେଲେ ଜାହାଜକ ଡଙ୍ଗା ଦେଇ ପଛେ ପଛେ ପଠେଇବା ଦରକାର—ସେ ଘୋର ଗଣ୍ଡ !!

କୁଳ—ଠିକ୍ କହୁଚୁ, ଠିକ୍ କହୁଚୁ—ମୁଁ ଯାଏ ତାର ବନ୍ଦୋବସ୍ତ କରେ ।

(ପ୍ରସ୍ଥାନ)

(ବଧୂଶେଖର କିଛିକ୍ଷଣ ଏଣେତେଣେ ଚାହିଁ ଚାଲିଯାଉଥିଲେ—ଫେରି ପଡ଼ିଲେ ।)

ବଧୂ—ଆରେ, ମୁଁ ତ ଭୁଲିଯାଉଥିଲି । ସେ—କାହାନ୍ତି ମ, ଏମାନେ ସବୁ !!

ତଅପୋଇ—(ଘରର ଉପରୁ) କାହାକୁ ଖୋଜୁଛ କି ସାନବୋଉ ?

ବଧୂ—(ଉପରକୁ ଚାହିଁ) ଆରେ, ତୁ ସେଠି ?

ତଅପୋଇ—ନୂଆବୋଉକୁ କି ଖୋଜୁଛ ?

ବଧୂ—ଏଁ...ନା,—ହଁ, ନାଁ—ମୁଁ ତତେ ଖୋଜୁଥିଲି—ତୁ—ଶୁଣିଲୁ—ଶୁଣିଲୁ !

(ତଅପୋଇ ଓହ୍ଲାଇଆସିଲା ।)

ହଇଲେ ! ତୋର ପରା ଆଜି ସୁନଷଠ ! ଠାକୁରଘରକୁ ଯାଇନୁ ଯେ ?

ତଅପୋଇ—କେମିତି—କାହା ସଙ୍ଗେ ଯାଇଥାନ୍ତି ଯେ ?

ବଧୂ—କାହିଁକି—ତୋ ନୂଆବୋଉ ସଙ୍ଗେ ।

(ଏତେବେଳକୁ ମାଳେଦ ଓହ୍ଲାଇ ଆସିଲେଣି ତଳକୁ ।)

ମାଳେଦ—ହୁଁ—ନୂଆବୋଉ ସାଙ୍ଗେ ! କରିଦେଲେ ବରତ !

ବଧୂ—ହଁ, ବରତ କରିବା ତ ଆମର କାମ, ଆଉ ତାକୁ ପାଳିବା ତମର କାମ ।

ମାଳେଦ—ହୁଁ, କଣା-ଦାସୀ !!

ବଧୂ—କଣାଦାସୀ ତ' !

ମାଳେଦ—ହଉ; ଦେଖିବା ଯେ ମୁଁ କେମିତି କଣାଦାସୀ ଆଉ ତେମେ କେମିତି ଖାଉନ ! (ଚାଲିଯାଉଥିଲେ)

ବଧୂ—ଆହା ହା—ରାଗିଗଲ କି ? ଶୁଣ ମ !

ମାଳେଦ—(ଫେରିପଡ଼ି) ମଜା, ରଗଉଚ—ରାଗିବ ନାହିଁ ?

(ଉଜ୍ଜ୍ୱଳାର ପ୍ରବେଶ)

ଉଜ୍ଜ୍ୱଳା—ହୁଁ, ଏଠି ରଗାରଗି ଚାଲିଚଟି ? ତମକୁ ପରା ବଧୂ କହିଥିଲି ତଅପୋଇ ଠାକୁର-ଦର୍ଶନକୁ ଯିବ—ବରତ କରିବାକୁ—ତମେ ଆସି ଏଠି ସାନବୋହୂକୁ ଦେଖି ସବୁ ଭୁଲିଗଲ ପରା ?

ବଧୂ—ନା—ନା, ମୁଁ କିଛି ଭୁଲିନାହିଁ ବଉଳ ! ମାନେ...

ମାଲେଦ୍ଧ—ମାନେ, ମାନେ କଅଣ ? ସୁଆର—ତେଲିଙ୍ଗି ବାଜା—ଏସବୁ କିଛୁ ବନ୍ଦ ନ କରି ଏଠି ଆସି କଅଣ କରୁଥିଲ ଶୁଣେ ?

ବଧୂ—ଯାଉଚ ବାବା ଯାଉଚ—ସବୁ ବନ୍ଦ କରିଦେଉଚ ।

(ଚଞ୍ଚଳ ଗୃହଲଗଲେ ବାହାରିଆଡ଼େ ।)

ଦ୍ରକ୍ଷ୍ଲା—ସାନବୋହୂ ! ତଅପୋଇକୁ ପାଟମୂଲ୍ଟ ପିନ୍ଧେଇ, ଚନ୍ଦନପାଟି ଲେଖିଦେଇ ସଜ କରିଦେବୁ । ମୁଁ ଯାଉଚ—ତେଣେ କାମ କେତେ ପଡ଼ିଚ । (ପ୍ରସ୍ଥାନ)

ମାଲେଦ୍ଧ—ଆସ ଗୋ ଗେହ୍ଲା ରତନ—ଆସ !

(ଦେଖିଲେ ତଅପୋଇ କଅଣ ଯେମିତ ଭାବୁଚ, ତା' ମୁହଁ ଯେମିତ ଶୁଖିଯାଇଛୁ ।)

କଲେ, ଆଜ ଭଲ ଦିନଟାରେ ଏମିତ ମୁହଁ ଶୁଖେଇଦେଲୁ ଯେ ?

ତଅପୋଇ—(ହସିବାକୁ ଚେଷ୍ଟାକରି) ମୁହଁ କାହିଁକ ଶୁଖେଇବ ମ ? ଗୋଟାଏ କଥା ଭାବୁଛୁ ।

ମାଲେଦ୍ଧ—କଅଣ କୁଆ ଭଉଣୀ ?

ତଅପୋଇ—ଆଚ୍ଛା ନୂଆଭାଉଜ ! ସାନଭାଇ କହୁଥିଲେ—ମୁଁ ଶୁଣିଚ—କୁଆଡ଼େ ସବୁ ପାଣି-ବୁଡ଼ା ଚୋର ଅଛନ୍ତି—ତାଙ୍କୁ ବୋମେଣ୍ଟ କହନ୍ତି । ସେଇମାନେ ଲୁଚି ଲୁଚି ପାଣି ଭିତରେ ଥାଇ, ଡଙ୍ଗା ବୋଇତ କଣା କରି ବୁଡ଼େଇ ଦିଅନ୍ତି, ଆଉ ସାମଗ୍ରୀତକ ଲୁଟିନିଅନ୍ତି ।

ମାଲେଦ୍ଧ—ହଁ, କାହିଁକ ସେସବୁ କଥା ତୋର ହଠାତ୍ ମନେପଡ଼ିଗଲା ଯେ ?

ତଅପୋଇ—ସେମାନଙ୍କ ପାଖରେ ବ ଖଣ୍ଡା ତରଓ୍ବାଲ ଥାଏ ?

ମାଲେଦ୍ଧ—ହଁ, ଥିବ ।

ତଅପୋଇ—ସେମାନେ ତ ମଣିଷକୁ ସବୁ ହାଣି ପକାଉଥିବେ ନୂଆଭାଉଜ ?

ମାଲେଦ୍ଧ—ହଁ, ବାଧା ପାଇଲେ ଆଉ କଣ ଛାଡ଼ୁଥିବେ ।

ତଅପୋଇ—ଏକୁଟିଆ ଜଣେ ମଣିଷ କଅଣ ସେମାନଙ୍କ ସାଥିରେ ଲଢ଼ିପାରିବ ?

ମାଳେନ୍ଦ୍ର—ରୁ ଏସବୁ କଥା କାହିଁକି ସାରୁଚୁ କହୁଲୁ—ଆଜ ଭଲ ଦିନଟାରେ !
(ଏଇ ସମୟରେ ଦାଣ୍ଡରେ ଢୋଲଙ୍କି ବାଜା ବାଜିଉଠିଲା ।)
ଏଇ ବାଜା ବାଜିଲାଣି—ପୂଆଣି ଆସି ଦାଣ୍ଡ ଦୁଆରେ ଭିଡ଼ାହେବଣି—ରୁ ଆ'—ମୋ ସୁନା ଭଉଣୀଟି ପରା !

(ତଅପୋଇକି ନେଇ ଚାଲିଗଲେ ।)

## ଚତୁର୍ଥ ଦୃଶ୍ୟ

[ ବସନ୍ତପୁର ଗାଁଦାଣ୍ଡ—କୁଳଶେଖର, ରାଜଶେଖର, ଶଶିଶେଖର ଓ ଦାସ ମହାରଣା କଥାବାର୍ତ୍ତା ହେଉ ହେଉ ପ୍ରବେଶ କଲେ । ]

କୁଳ—ତେମେ ଏମିତି ଗୋଡ଼େ ଗୋଡ଼େ ବାହାରିଲ ମଉସା ?

ଦାସ—ହଁରେ ବାପ—ଚଞ୍ଚଳ ନଫେରିଲେ ସବୁ କାମ ତେଣେ ଢିଲା କରିଦେବେ । ତମ କାମ ତ ସରିଆସିଲାଣି—ଏଣିକି ଦିନ ବେଳା ସ୍ଥିର କରି ତମ ଗାଁ-ମୁଣ୍ଡ ଘାଟଠିକି ବୋଇତ ଠେଲିଆଣିବା କଥା । ଖାଲି ରଜା-ଘର କାମକୁ ମୋର ଡର । ଏଥିକିବେଳୁ ନ ଜଗିଲେ ସବୁ ବଗିଡ଼ିଯିବ—ମୋ ମୁଣ୍ଡ ଛିଡ଼ିପଡ଼ିବ । ଯା'ହେଉ ତଅପୋଇକି କୋଉଦିନୁ ଦେଖି ନ ଥିଲି, ଦେଖିଗଲି—ମନଟା ଶାନ୍ତ ହେଲା ।

ରାଜ—ସୁମନ୍ତ୍ର ସାଥିରେ ଦେଖାହେଲା ତ ମଉସା ?

ଦାସ—ହଁ, ତାକୁ ବି ଦେଖିଲି, କହୁଥିଲା—ଆଦର, ଯତ୍ନ, ସ୍ନେହ କୋଉଥିରେ ତାର ଅଭାବ ନାହିଁ । ଝିଅମାନେ ଯେମିତି, ବୋହୂମାନେ ବି ସେମିତି !

କୁଳ—ସେ ତ' ମୋ ସାଙ୍ଗେ ଖାଲି ଜିଗର ଲଗେଇଥିଲା—ତମ ପାଖକୁ ଯିବ, ସେଠି ବୋଇତକାମ କରିବ । ମୁଁ କେତେ ବୁଝାସୁଝା କଲିଣି···

ଦାସ—ରହିଲ ! ରହୁ, ରହୁ, ରୂ ପଗ୍ର କହିଲୁ ସେ ଷଣ୍ଡିସ୍ତ ପିଲ ! ଷଣ୍ଡିସ୍ତ ପିଲଟା ସେଠି ଯାଇ କଅଣ କରତ ପଶିବ ? ନା, ସେ ଏଇଠି ରହୁ—ପଢ଼ୁଆ ବୁଝିଆ ପିଲ ।

ରାଜ—କାଲି ଏବେ ଆମ ବଲଦାଦାଙ୍କର ଖଣ୍ଡିଏ ବୋଝେଇ ପଢ଼ୁଆ ଆମ ଗାଁ ନଈ ମଗରବୁଡ଼ା ଗଣ୍ଡଠି ବୁଡ଼ିଯାଇଥିଲ । ସେମିତ ଶୁଣିଚ—ଯାଉଁଚ । ସତକୁ ସତ ସେ ନ ଯାଇଥିଲେ ଲୋକବାକ ତ’ ଯାଇଥାନ୍ତେ—ତାଙ୍କ ସାଙ୍ଗେ ବଲଦାଦାଙ୍କ ସାନପୁଅ ମୁଷା ବ ଜଳ ସମାଧି ଭଜିଥାଆନ୍ତା ।

କୁଳ—ଲୋକଙ୍କୁ ବିପଦରୁ ଉଦ୍ଧାର କରିବାକୁ ସବୁଦେଳେ ଆଗଭର ।

ଦାସ—ରହିଯିବ କ ଏଠି, ମନ ଚଞ୍ଚଳ ନ କର !

କୁଳ—ମୋ’ ମନରେ କେତେ କଥା ଅଛି, ମୁଁ ଫେର୍ ତମକୁ ସବୁ କହିବ ଯେ ମହସା ! ଠାକୁରେ ସତେ ମୋ ଆଶା ମେଣ୍ଟାଇବେ !

ଦାସ—କଅଣ, କଅଣ ?

କୁଳ—( ଦାସ ମହାରଣା କାନରେ କଅଣ କହିଲେ । )

ଦାସ—( ଖୁସି ହୋଇ ) ହଁ—ହଁ, ଭଲ ହବ ! ଖାସା ହବ ! ମୋ ମନକୁ ବେଶ୍ ପାଉଚ ।

କୁଳ—ଠାକୁରଙ୍କ ଇଚ୍ଛା !

ଦାସ—ହଉ ତେବେ ଆଅ, ମୁଁ ଆସେ···( ପ୍ରସ୍ଥାନୋଦ୍ୟତ )

କୁଳ—ହଁ, ମହସା ! ତମେ ତ କ୍ଷେତବାସୀପୁର ସଡ଼କ ଦେଇ ଯିବ ?

ଦାସ—ହଁ, ଆଉ ବାଟ କାହିଁ—କାହିଁକ ?

କୁଳ—ପିପିଲି ଚୀନା-କୋଠିକ ଯୋଉ ଚୀନା-ସାଇବ ନୂଆ ହୋଇ ଆସି-ନାହାନ୍ତି—ସେ ଆସିଥିବେ କ୍ଷେତବାସୀପୁର ଗାଁକୁ ଆଜ । ତାଙ୍କୁ ଟିକଏ ଖବର କଲେ ସେ ଆମ ଗାଁକୁ ଆସନ୍ତେ—କାରବାର ସମ୍ପର୍କରେ ଟିକଏ କଥାବାଷା ଅଛି ଯେ !

ଦାସ—ହଉ, ଦେଖିବ ଯେବେ କହିଦେବ । ହେଲେ, କହୁଚ ସେ ନୂଆ-ହୋଇ ଅମର ଏଠିକ ଆସିଚନ୍ତି ।

କୁଳ—ହଁ—ହକଲ ବନ୍ଦରଠି ଥିଲେ, ଏବେ ଏଠିକି ବଦଳି ହୋଇ ଆସିଛନ୍ତି ।
ଦାସ—ଶକ୍ତି ପାଣବ କ ନାହିଁ କେଜାଣି—କେତେ ଚୀନାଲୋକ ତ ଆମର ଏଣେ ଅଛନ୍ତି । ତାଙ୍କ ନାଁ କଅଣ ?
କୁଳ—ନାଁଟା କଅଣରେ ଶଶୀ ?
ଶଶୀ—ଓ୍ୱାଙ୍ଗ୍ ଲୁ ।
ଦାସ—ଏମିତି ନାଆଁ ତ ମୁଁ ବହୁତ ଶୁଣିଚି ।
କୁଳ—ହଁ ଚୀନାଦେଶ ସଙ୍ଗେ ଆମ ଓଡ଼ିଆଙ୍କର ବଣିଜ ସମ୍ପର୍କ ତ ବହୁକାଳରୁ ରହିଚି ।
ଦାସ—ହଁ, ଆମର ଗଜପତି-ମହାରାଜା ଆଉ ଚୀନାରଜାଙ୍କ ଭିତରେ ବ ବନ୍ଧୁ ସମ୍ପର୍କ ବହୁଦିନୁ ଚାଲିଆସୁଚି ।
କୁଳ—ବହୁଦିନୁ ମଉସା—ବହୁଦିନୁ !
ଦାସ—ହଉ, ମୁଁ ଆସେ ବାପ ! ଖରା ଉଠିଗଲାଣି ।
(କୁଳ ପ୍ରଭୃତି ଏକଆଡ଼େ, ଦାସ ମହାରଣା ଅନ୍ୟଆଡ଼େ ପ୍ରସ୍ଥାନ କଲେ । )

## ପଞ୍ଚମ ଦୃଶ୍ୟ

[ ସାଧବଘର ବଗିଚାର ଏକ ଅଂଶ—ଗୋଟିଏ ସ୍ଥପତିଶିଳ୍ପୀ ସ୍ୱର୍ଗତ କେଶରୀଧରଙ୍କ ପ୍ରାୟ-ସମାପ୍ତ ମୂର୍ତ୍ତିଟିରେ କହାଣ ମାତ୍ର କ୍ଷୁଦ୍ର ରାବରେଖା ଫୁଟାଉଥିଲା—ପାଖରେ ଖଣ୍ଡିଏ ପଥର ଉପରେ ବସିଥିଲେ ସୁମନ୍ତ । ଦୂରରେ ସୁବର୍ଣ୍ଣରେଖା ନଈ, ଆରପାଖରେ ସୂର୍ଯ୍ୟଦେବତା ସେ ଦିନପାଇଁ ମେଲାଣି ଘେନୁଥିଲେ । ]
ଶିଳ୍ପୀ—ହେଇଟି ସାଆନ୍ତେ; ପିଠ ଉହାରେ ଗୋଟିଏ ବୋଇତ ଚଢ଼ ଖୋଲିଦେଲି !

ସୁମନ୍ତ—ଭଲ କଲ । (କଛୁକ୍ଷଣ ପରେ) ଆଚ୍ଛା ମାସ୍କୋଧର, ପଥର ଦେହରେ କୌଣସି ବସ୍ତୁକୁ ରୂପଦେଲା ଆଗରୁ ତା'ର ପ୍ରତିରୂପ ଆଙ୍କି ରଖିବା କଅଣ ଦରକାର ମନେକର ନାହିଁ ?

ଶିଳ୍ପୀ—କାହାର କାହାର ମୂର୍ତ୍ତି ଗଢ଼ିଲାବେଳେ ହୁଏତ ସେଇଟା ଦରକାର ହୋଇପାରେ । ବାକି ବୁଢ଼ା ସାହୁକାରଙ୍କ ସାଙ୍ଗେ ମୋର ଜଣାଶୁଣା ଅଛି । ପିଲାଟିଦିନଠୁ ତାଙ୍କୁ ଦେଖିଆସିଛି—ସେଥିପାଇଁ ମୋର ସେଇଟା ଦରକାର ନାହିଁ । ମାତ୍ର ସତ କହିଲେ ରୂପ ଦେଖି ବା ଚିତ୍ରରୁ ନକଲ କରି ମୂର୍ତ୍ତି ଗଢ଼ିବାଟା ଓଡ଼ିଆ ବଢ଼ାଇଣି ପାଖରେ ବଡ଼ କଥା ନୁହେଁ କି ସେଇଟା ଉଚ୍ଚଦରର କାରିଗରି ବି ନୁହେଁ । ତା ଛଡ଼ା, ନକଲ କରି ତାର ମୁଣ୍ଡ ହୋଇଯାଏ ଫାଙ୍କା ।

ସୁମନ୍ତ—ଠିକ୍ କହୁଛ, ମୁଣ୍ଡ ଫାଙ୍କା ହୋଇଗଲେ ସେ ସୃଷ୍ଟି କରିପାରିବ ନାହିଁ କରୁ । (ଦୁହେଁ କଛୁକ୍ଷଣ ନୀରବ)

ସୁମନ୍ତ—ଏସବୁ କି ଜାତିର ପଥର ମାସ୍କୋଧର ?

ଶିଳ୍ପୀ—ଏଥିରେ ତିନି ଜାତିର ପଥର ଲାଗିଛି ସାଆନ୍ତେ ! ଖାସ୍ ମୂର୍ତ୍ତିଟି ହେଲା କଳା ମୁଗୁନି, ତଳ ପତନ, ପୀଠ, ଆଉ ବଡ଼ ହେଲା ଗ୍ରାନଗୁଣିଆ କୁଣ୍ଡା; ଆଉ ମଥା ଉପରକୁ ଯୋଉ ପଟଟି ଦେଇଛି—ସେଇଟି ହେଲା ରଙ୍ଗତାଳମ୍ବ ।

ସୁମନ୍ତ—ଏତେ ଜାତିର ପଥର ମିଳାଇଲ କୋଉଠୁ ?

ଶିଳ୍ପୀ—(ହସି) ଆମ ଦେଶରେ କଅଣ ପଥରର ଅଭାବ ଅଛି ? ତେବେ ଏଇ ପଥରତକ ନୀଳଗିରିରୁ ଆମଦାନୀ ।

(ଦୁହେଁ ପୁଣି କଛୁକ୍ଷଣ ନୀରବ)

(ସୁମନ୍ତ ଯେପରି ଗୋଟିଏ ଭାବ-ସମୁଦ୍ରରେ ବୁଡ଼ି ରହିଲା)

ସୁମନ୍ତ—ଆଚ୍ଛା ମାସ୍କୋଧର, ଶିଳ୍ପୀ ତାର କାମ ବଦଳରେ ପାଏ ଆନନ୍ଦ; ସନ୍ତୋଷ ନୁହେଁ ?

ଶିଳ୍ପୀ—ବାଳ ସେ ଖୁସି, ସନ୍ତୋଷରେ ତ ଶିଳ୍ପୀ ବିଚରାର ପେଟ ପୂରେ-ନାହିଁ—ସେଥିପାଇଁ ସେ···

ସୁମନ୍ତ—ପୂରେ ମାସ୍ଟାଧର, ପୂରେ ! ଗୋଟିଏ ଶିଳ୍ପୀ କଅଣ—ଗୋଟିଏ ଜାତିର ପେଟ ପୂରଯାଏ । ଜାତି ଭିତରେ ଇ ଶିଳ୍ପୀ ବଞ୍ଚିରହେ—ଯୁଗ-ଯୁଗ ଧରି !

ଶିଳ୍ପୀ—(କିଛି ବୁଝି ନ ପାରି) ଏଁ !—ହୁଁ—ହେଇଥିବ । (କିଛିକ୍ଷଣ ପରେ) ଆଚ୍ଛା ସାଆନ୍ତେ ! ତମେ ଖୁବ୍ ପାଠ ପଢ଼ିଚ ନୁହେଁ ? ତମ ନିବାସ କୋଉଠି ?

ସୁମନ୍ତ—(ଅନ୍ୟମନସ୍କ ଭାବରେ କହିପକାଇଲା) ଏଇଠି । (ପରକ୍ଷଣରେ ପ୍ରକୃତସ୍ଥ ହୋଇ) ଏଁ, କଅଣ କହୁଲ ?

ଶିଳ୍ପୀ—ତମ ଘର ? ଆଚ୍ଛା, ତମର ଆଉସବୁ କିଏ ଅଛନ୍ତି ?

ସୁମନ୍ତ—ସମସ୍ତେ—ନା—ନା କେହି ନାହାନ୍ତି । (ଉଠିପଡ଼ିଲେ ହଠାତ୍) ତେମେ କାମ କର ମାସ୍ଟାଧର !

ଶିଳ୍ପୀ—(ନିଜର ଧୃଷ୍ଟତାରେ ଲଜ୍ଜିତ ହୋଇ) ଆଜ୍ଞା !

(କାମରେ ଲଗିଲା ଶିଳ୍ପୀ, ହେଲେ ସୁମନ୍ତର ମନଟା କଅଣ ପାଇଁ ବଗିଡ଼ିଗଲା ଯେମିତି । କମେ କମେ ସୂର୍ଯ୍ୟ ଅସ୍ତଯିବା ଉପରେ ହେଲେ, ଦୁନଆଟା ସାରା ଯେମିତି ନାଲି ହୋଇଉଠିଲା—ଶିଳ୍ପୀ ଆଉ କାମ କରିପାରିଲା ନାହିଁ । )

ଶିଳ୍ପୀ—ନା (ଆକାଶକୁ ଚାହିଁ) ଧର୍ମଦେବତା ମାଆକୋଳକୁ ଗଲେ, ଆଉ କାମ କରିହେବ ନାହିଁ ।

ସୁମନ୍ତ—ନାଁ, ଆଉ ଦିଶିବ ନାହିଁ ।

(ଶିଳ୍ପୀ ତାର ଯନ୍ତ୍ରପାତି ବାନ୍ଧିବାରେ ବ୍ୟସ୍ତ ରହିଲା । )

ସୁମନ୍ତ—ଆଚ୍ଛା ମାସ୍ଟାଧର, ତମେ ଶିଳ୍ପୀ, ପଥର ଦେହରେ ରଙ୍ଗ-ବେରଙ୍ଗର ଖେଳ ଫୁଟାଇଚ । କହିପାରିବ—ଦୁନଆଟାସାରା ହଠାତ୍ ଏମିତି ନାଲି ହୋଇ ଉଠିଲା କାହିଁକି ?

ଶିଳ୍ପୀ—ନାଲି ହବ ନାହିଁ ? ଧର୍ମଦେବତା ଦିନମାନ ଖଟି ଖଟି ଖୁସିବାସିରେ ମାଆକୋଳକୁ ଫେରୁଚନ୍ତି ।

ସୁମନ୍ତ—ତମେ କହୁଚ ସେ ତାଙ୍କର ହୃଦୟସ୍ପର୍ଶୀର ଚିହ୍ନ ? ମୁଁ କହୁଚ ସେ ତାଙ୍କର ପରିହାସ ।

ଶିଳ୍ପୀ—ପରିହାସ କରିବେ ସେ କାହିଁକି ? କାହାକୁ ?

ସୁମନ୍ତ—ଏଇ—ତମକୁ, ମତେ—ଦୁହିଁଆର ସମସ୍ତଙ୍କୁ—ଆମ୍ଭେମାନେ ପଦେ ପଦେ ଭୁଲ କରୁଛୁ କି'ନା—ଆଉ ସେ ଭୁଲକୁ ସୁଧାରିବା ବାଟ ଥାଉ ଥାଉ ଆମେ ଜାଣିଶୁଣି ସେ ବାଟ ପାଖ ଦେଇ ଯାଉନୁ—ଏଥିପାଇଁ ।

ଶିଳ୍ପୀ—(କିଛି ନ ବୁଝିପାରି କ୍ଷଣକାଳ ସୁମନ୍ତ ମୁହଁକୁ ବୋକାଙ୍କ ଭଳି ଚାହିଁଲା । ପରେ ତାର ଯନ୍ତ୍ରପାତିର ବୁଜୁଲାଟି କାନ୍ଧରେ ପକେଇ ଯିବାକୁ ବାହାରିଲା । ) ମୁଁ ତେବେ ଆସୁଚି ସାଆନ୍ତେ !

ସୁମନ୍ତ—ହଉ ଆସ !

ଶିଳ୍ପୀ—ସାହୁକାରମାନେ କେବେ ବୋଇତ ମେଲିବେ ?

ସୁମନ୍ତ—(ଅନ୍ୟମନସ୍କଭାବେ) କାଲି । (ପରକ୍ଷଣରେ ପ୍ରକୃତିସ୍ଥ ହୋଇ) ଏଁ—ନା—କାର୍ତ୍ତିକ ପୂର୍ଣ୍ଣିମୀ ଦିନ ।

ଶିଳ୍ପୀ—ତା'ହେଲେ ତ ଆଉ ଦିନ ଛଅଟା ରହିଲା; ଆଜି ତ ତିଥି ହେଲା ଦଶମୀ, ନା ?

ସୁମନ୍ତ—ହୁଁ !

ଶିଳ୍ପୀ—ହଉ, ମୁଁ ଆସୁଛି । ସାନ-ସାହୁକାରଙ୍କୁ କହିଦେବ—ଆଉ ତ କାମ କିଛି ନାହିଁ, ଖାଲି ମଇଲମ ଘଷି ଚକ୍‌କିଣ କରିବା କଥା, ମୁଁ କାଲି ଆସି ସାରିଦେବି । ·(ନମସ୍କାର କରି ପ୍ରସ୍ଥାନ)

(ସୁମନ୍ତ କିଛିକ୍ଷଣ ଅସ୍ତଗାମୀ ସୂର୍ଯ୍ୟଙ୍କ ଆଡ଼କୁ ଚାହିଁ ରହିଲା ପରେ—)

ସୁମନ୍ତ—ଭୁଲ୍ ! ମୁଁ ତ ଭୁଲ କରି ନାହିଁ ପ୍ରଭୁ ! ଏଁ, କରିବାକୁ ଯାଉଛି ? ନା—ନା—ସେ ଭୁଲ ମୁଁ କରିବ ନାହିଁ କେବେ—ନା—ନା ।

(ଭିତରଆଡ଼ୁ ବଗିଚ୍ଚ ଭିତରକୁ ପଶି ଆସୁଥିଲା ଉଅପୋଇ—ସୁମନ୍ତକୁ ସେ ଦେଖିପାରି ନାହିଁ, ଅଥଚ ତାର ଶେଷ କଥାଟି ତା କାନରେ ପଡ଼ିଗଲା । କିଏ ଏମିତି ବେଳରେ କଅଣ କହୁଚ ଭାବି ଚମକିଉଠିଲା । )

ଡଥପୋଇ—କଏ ?

ସୁମନ୍ତ—( ତଥପୋଇକୁ ଦେଖିପାର ) କେହି ନାହିଁ—ତଥପୋଇ !
(ତଥପୋଇ ସ୍ଥାଣୁବତ୍ ଛିଡ଼ା ହୋଇ ରହିଲା । ହାତରେ ଧରିଥିଲା ଗୋଟିଏ ବଲେଇଛୁଆ । ସେଇଟାକୁ 'ଯା' ବୋଲି କହି ତଳେ କସ୍ତଚ୍ଛି ଦେଲା । ସୁମନ୍ତ ଏପରି ଅବସ୍ଥାକୁ ବଦଳେଇ ଦେବା ଉଦ୍ଦେଶ୍ୟରେ ପ୍ରଥମେ କଥା ଆରମ୍ଭ କଲା । )

ସୁମନ୍ତ—ମହାପାଙ୍କ ମୂର୍ତ୍ତିଟି ଗଢ଼ାସରିଚ ତଥପୋଇ— ଦେଖିଚ ?

ତଥପୋଇ—(ନୀରବ)

ସୁମନ୍ତ—ତମେ ଯେଉଁ ବୋଇଡ ଚକ୍ଷଟି ପାଠଦେହରେ ଖୋଲିଦେବାକୁ କହିଥିଲ—ମାଷ୍ଟ୍ରାଧର ଖୋଳିଦେଇଚ ।

ତଥପୋଇ—(ନୀରବ)

ସୁମନ୍ତ—ମୁଁ ତ ତମ ବାପାଙ୍କୁ ଦେଖିନାହିଁ—ତେବେ ସାନବାଇ କହୁଥିଲେ ମୂର୍ତ୍ତିଟି ଅବିକଳ ହୋଇଚ—ପଥରଦେହରେ ଯେମିତ ଜୀବନ ଅଛି !!

ତଥପୋଇ—ହୁଁ—ସେ ସାନବାଇଙ୍କ କଥା···

ସୁମନ୍ତ—ତମର ବିଶ୍ୱାସ ହେଉନାହିଁ ? ତମେ ଜଳେ ଦେଖିଲେ ବୁଝିପାରିବ—ଦେଖ (ମୂର୍ତ୍ତିଆଡ଼କୁ ହାତ ବଢ଼େଇଦେଲେ । )

ତଥପୋଇ—କୋଉ କଥା ? ପଥରଦେହରେ ଜୀବନ ?

ସୁମନ୍ତ—(ମନଦ୍ଧତରଟା ଟିକଏ ଦୋହଲି ଉଠିଲା ପରି ) ତଥପୋଇ !

ତଥପୋଇ—ଭୁଲ !

ସୁମନ୍ତ—ଭୁଲ ? ମାନେ—ମୁଁ ତମ ବାପାଙ୍କର ଏଇ ମୂର୍ତ୍ତି କଥା କହୁଥିଲି ।
(ନୀଳେନ୍ଦ୍ର ବଗିଚ୍ଚ ଭିତରକୁ ପଶି ଆସୁ ଆସୁ ଏଇ କଥା କେଇ ପଦ ଶୁଣିପାରିଲେ ।)

ନୀଳେନ୍ଦ୍ର—ଉହୁଁ—ଭୁଲ କଲ···

ସୁମନ୍ତ—ସାନବାବୁଜ, ତମେ କଅଣ କହୁଚ ?

ନୀଳେନ୍ଦ୍ର—ଠିକ୍ କଥା କହୁଚ । ବାପାଙ୍କ ମୂର୍ତ୍ତି କଥା ଜମା ନୁହେଁ । ଅସଲ ମୂର୍ତ୍ତି ଏଇ ଆଗରେ ଉଭା ।

ତଅପୋଇ—ଚୁପ୍ ! (ତଅପୋଇ ସେଠୁ ଗ୍ଲଯାଇ ମୂର୍ତ୍ତିଟିକୁ ନିରୀକ୍ଷଣ କରିବାକୁ ଲଗିଲ ।)

ମାଲେନ୍ଦ—(ସୁମନ୍ତ୍ରକୁ) ମୂର୍ତ୍ତିଟି ଖୁବ ସୁନ୍ଦର; ନା ?

ସୁମନ୍ତ୍ର—(ନୀରବ)

ମାଲେନ୍ଦ— କହୋ, ପଥରମୂର୍ତ୍ତି କଥା କହୁ କହୁ ନିଜେ ପଥର ପାଲଟିଗଲ କି ?

ସୁମନ୍ତ୍ର—ନାଁ' ତ !

ମାଲେନ୍ଦ—ନାଁ କି ହଁ ମନକୁ ପଚ୍ଚର । ହଉ, ହେଲ ଏବେ, ପଥରକୁ ପାଣି ହବାର ସୁଯୋଗ ଦେଇ ମୁଁ ଯୋଉ ବାଟେ ଆସିଥିଲି ସେଇ ବାଟେ ଫେରଯାଉଚ ।

(ଏହା କହି ଫେରଯାଉଥିଲେ ଖଣ୍ଡାଆଡ଼େ ।)

ତଅପୋଇ—ରହ ଲେ ନୂଆଭାଉଜ, ମୁଁ ଯିବ ।

ମାଲେନ୍ଦ—ଉହୁଁ, ତୁ କୁଆଡ଼େ ଯିବୁ ଲେ ? କଣ୍ଟା ଲଗିଯିବ ଝାଁକବାସରେ—ଛନ୍ଦହୋଇ ପଡ଼ିଯିବୁ ଯେ !

ସୁମନ୍ତ୍ର—ଏ ସବୁ କଅଣ କହୁଚ ସାନଭାଉଜ ?

ମାଲେନ୍ଦ—ଆହା, ଜମା ବୁଝିପାରୁନଥିବ !

(ଏହି ସମୟରେ 'ସୁମନ୍ତ୍ର ସୁମନ୍ତ୍ର' ଡାକ ଡାକ କୁଳଶେଖର ପ୍ରବେଶ କଲେ । ମାଲେନ୍ଦ ଅନ୍ତରାଳକୁ ଗ୍ଲଗଲେ ।)

କୁଳ—ଏଇ ତ ସୁମନ୍ତ୍ର । ତମଠି କାମ ଅଛି···ଶୁଣ ! ଆରେ, ସେଠି କଏ—ପୁନାଭଉଣି ! କଅଣ ଖେଳୁଚୁ ? ଖେଳୁଥା, ମୁଁ ଟିକଏ ସୁମନ୍ତ୍ରକୁ ନେଇଯାଉଚ—ବଡ଼ ଜରୁରୀ କାମ ଅଛି ।

ତଅପୋଇ—ତମେ ସବୁ କୋଉ ଦିନ ଅନୁକୂଳ କରିବ ବଡ଼ଭାଇ ?

କୁଳ—କାହିଁକି—ପୂର୍ଣ୍ଣମୀଦିନ—ଆଉ ତ ଦିନ ଛଅଟା ରହିଲ !

ତଅପୋଇ—(କମ୍ପିତ ସ୍ୱରରେ) ଭାଇ ! (ଧାଇଁଗଲ ଭାଇ ପାଖକୁ )

କୁଳ—(ଖଉଣୀକ ହାତଧରି) ମୋ ସୁନାଭଉଣୀଟି ପରି ! ଦୁଃଖ କରନା ! ତୋର ଭାବନା କଅଣ କହିଲୁ ? ତୋର ସାତ ସାତ ଜଣ ଭାଉଜ ଅଛନ୍ତି—ତହିଁରେ ପୁଣି ମାନଭାଉଜ ତୋର ସାଥୀ, ଆଉ ସୁମନ୍ତ ବ ରହିବ । ତୋର ହଲେହେଲେ ଦୁଃଖ କଷ୍ଟ ସେ ସହିବ ନାହିଁ—ନା ସହିବ ନାହିଁ—ଏ ଭରସା ମୋର ଅଛି ! ମୁଁ ସବୁ ଠିକ୍‌ଠାକ୍ କରି-ଦେଇ ଯିବି ଭଉଣୀ— ସବୁ ଠିକ୍‌ଠାକ୍ କରିଦେଇ ଯିବି—ହଁ, ସବୁ ଠିକ୍‌ଠାକ୍ କରିଦେଇ ଯିବି ।

(ଆଖିରେ ଅଶ୍ରୁ ଜମିଉଠିଲା— ସେ ଲୁଚେଇ ପୋଛିଲେ ।)

ତଅପୋଇ— ବଡ଼ଭାଇ ! ମତେ ସାଙ୍ଗରେ ନେଇ ଯା' !

କୁଳ—ତୁ କୁଆଡ଼େ ଯିବୁ ଭଉଣୀ ? ଛି, ଛିଃ ବାୟାଣୀ ପରି ହ'ନା । ଆମର ତ ସ୍ୱେ ଜାତି-ବେଉସା—କଅଣ କରିବା କହ ? ନ ଗଲେ ନ ହୁଏ । ତୁ କଅଣ ଆଜି ନୂଆ ଜାଣୁଚୁ ନା ଦେଖୁଚୁ, କହିଲୁ ? ଛି, ଯା— ତୋ ନୂଆଭାଉଜ ସଙ୍ଗେ ଖେଳୁଥା । ଆସ ସୁମନ୍ତ ! ତୁମକୁ ଏଇନେ ବନ୍ଦରଠେଇଁକି ଯିବାକୁ ପଡ଼ିବ । ସାଙ୍ଗରେ ରାଜ ଯିବ, ଲୋକବାକ ଯିବେ—କାଲି ଭଲଦିନ ଅଛି । ଦାସ ମଉସାଙ୍କୁ କହି ଉଦୟ ଲଗ୍ନରେ ବୋଇତ ଠେଲିଆଣିବ ଆମ ଗାଁ-ମୁଣ୍ଡ ବୋଇତ-ଭିଡ଼ା ଘାଟଠିକି— ଉଜାଣି ଉଠିବ—ଅବଶ୍ୟ ଟିକଏ ଭିଡ଼ ପଡ଼ିବ । ଆସ—ଆଉରି କେତେ କଥା ଅଛି, କହୁଚି ଆସ । (ସୁମନ୍ତ ସହିତ ପ୍ରସ୍ଥାନ)

(ମାଲେନ୍ଦ୍ର ଅନ୍ତରାଳରୁ ଆସି ତଅପୋଇ କାନ୍ଧରେ ହାତ ରଖି ପଚାରିଲା—

ମାଲେନ୍ଦ୍ର—ତୋର ଭାଇମାନେ ସବୁ, ଆମେ ତେବେ କେହି ନୁହଁ, ନା ?

ତଅପୋଇ—(କୃତ୍ରିମ ଗାମ୍ଭୀର୍ଯ୍ୟ ରକ୍ଷାକରି) ନା···

ମାଲେନ୍ଦ୍ର—ଆମେ ତେବେ ସବୁ ପର ?

ତଅପୋଇ—ହଁ ।

ମାଲେନ୍ଦ୍ର—କିଏ ତେବେ ନିଜର ?

ତଅପୋଇ—ଯିଏ ନୁହଁନ୍ତି ପର—ଭାଇମାନେ ।

ନୀଳେନ୍ଦ୍ର—ହଁ, ଆଉ ଜଣେ ବାକି ଅଛି ।

ତଅପୋଇ—କିଏ ?

ନୀଳେନ୍ଦ୍ର—(ସୁମନ୍ତ ଯାଉଥିବା ବାଟକୁ ଦେଖାଇ) ସିଏ ।

ତଅପୋଇ—ଚୁପ୍—

( ନୀଳେନ୍ଦ୍ର ଗାଇଲା )

ସଖି ! ଧରାପଡ଼ିଲାଣି,
ଧରାଇ ଦେଉଛି ତୋ ଛନ-ଚମକ ଚାହାଣି ॥
ଗୁପତେ କରୁ ମନା, ଗୁମର ହେଲା ଜଣା
ଗୁରୁଭାବ ସୂଚନା, ଅଙ୍ଗେ ଉକୁଠ ଜଡ଼ିଲାଣି ॥
ନଚାଇ ଗ୍ରୀବକ ତୋର ସୁଚାଇ ଦେଲା ତା ସ୍ମର
ଉଞ୍ଚାଇ ଅନଙ୍ଗ ଶେର କୋଦଣ୍ଡ ଭିଡ଼ିଲାଣି ॥
ରଚାଇ କଲା ଆରମ୍ଭ ଖଚାଇ ଦେଲା କି ଦମ୍ଭ
ଆଶାସ୍ୱୀ ସେ ପଶରମ୍ଭ—ପରମାଦ ବାଢ଼ିଲାଣି ॥

ତଅପୋଇ—(କୃତ୍ରିମ କୋପରେ) ମୁଁ ଯାଉଚି ଭାଉ, ରୁ ଆ ।
(ଧାଇଁ ଚାଲଗଲାବେଳେ କଅଣ ଗୋଟାଏ ମାଡ଼ିପକାଇଲା ।)
ଉଃ—ଉଃ—

ନୀଳେନ୍ଦ୍ର—(ମିଛ ଭାବ) କଅଣ କଣ୍ଟା କି ଲୋ ?

ତଅପୋଇ—ନାଇଁଲୋ ଛୁରାଟାଏ !
(ତଳୁ ଗୋଟାଇଲା ବଡ଼ ଛୁରାଟିଏ)

ନୀଳେନ୍ଦ୍ର—ଦେଖେଁ—ଦେଖେଁ—
(ପାଖକୁ ଆସନ୍ତେ ତଅପୋଇ—ଟେକି ଦେଖାଇଲା ଗୋଟିଏ ବଡ଼ ଛୁରା ।)
ସତେ ତ'—ଏଇଟା ଏଠିକି କେମିତି ଆସିଲା ।

ତଅପୋଇ—ହଁଏ ତ'—
(ସୁମନ୍ତ ବାହାରକୁ ଯିବା ବେଶରେ ପ୍ରବେଶ କଲେ ଉଦ୍‌ବିଗ୍ନ ଚିତ୍ତରେ)

ସୁମନ୍ତ—ଯାନଶ୍ରୀହଜ !

(ଏତେବେଳକୁ ନୀଳେନ୍ଦ୍ରର ନର୍ଦ୍ଦେଶରେ ତଅପୋଇ ଛୁରୀଟାକୁ ଲୁଗ୍ଭଇ-ସାରଲଣି । ସୁମନ୍ତ ବଗିଗ୍ଭର ଏପଟ ସେପଟ ଖୋଜିଲାଗିଲେ ।)

ନୀଳେନ୍ଦ୍ର—କହୋ, କଅଣ ଖୋଜିପକାଉଚ ?

ସୁମନ୍ତ—ମୋର ଗୋଟିଏ ଦରକାରୀ ଜିନଷ—ମାନେ—ଗୋଟାଏ ଛୁରୀ ମୋ ଅଣ୍ଟାରୁ ଏଇଠି କୋଉଠି ଖସିପଡ଼ିଛୁ କ କଅଣ···

ନୀଳେନ୍ଦ୍ର—ଖସିପଡ଼ିବାକୁ ଆଉ ଥାନ ମିଳିଲା ନାହିଁ ତାକୁ—ଏଇଠି ଖସି ପଡ଼ିଲା ? ଉହୁଁ—ଛୁରୀ ଖୋଜିବା ଗୋଟାଏ ବାହାନା ।

ସୁମନ୍ତ—ନାଁ ଯାନଶ୍ରୀହଜ ! ସଚ କଥା ।

ନୀଳେନ୍ଦ୍ର—ସତକଥା ହୋଇପାରେ; ହେଲେ ମନକଥା ନୁହେଁ !

ସୁମନ୍ତ—(କିଛି ବୁଝି ନପାରି) ମାନେ ?

ନୀଳେନ୍ଦ୍ର—ମାନେ-ଫାନେ ମୁଁ ଜାଣେ ନାହିଁ—ମନର ମଣିଷକୁ ପଗ୍ଭର ।
(ତଅପୋଇକ ଦେଖାଇଦେଲେ)

ସୁମନ୍ତ—ତା'ହେଲେ ଏଠି ପଡ଼ିନାହିଁ ? ( ନୀଳେନ୍ଦ୍ରର କଥା ଯେମିତି କାନରେ ପଶିନାହିଁ । )

ନୀଳେନ୍ଦ୍ର—ନା, ଆଉ କୋଉଠି ପଡ଼ିଥିବ ଦେଖ, କହୋ ଯାଅ—ବନ୍ଦରଠିକି ଯିବ ଯେ ? ତମକୁ ଗ୍ଭହିଁରହିଥିବେ ତେଣେ—

ସୁମନ୍ତ—ହଁ, ଯାଉଛି ।

ନୀଳେନ୍ଦ୍ର—ଆହା, ଯାଉଚ କହି ଫେର୍ ଟେରେଇ ଟେରେଇ···?

(ସୁମନ୍ତ ଗ୍ଭଲିଗଲେ । ନୀଳେନ୍ଦ୍ର ହସିଉଠିଲେ, ମାତ୍ର ତଅପୋଇ ସେ ହସରେ ଯୋଗଦେଲାନାହିଁ ।)

ତଅପୋଇ—ନୂଆଶ୍ରୀହଜ ! ରୁ' ଗ୍ଭର···

ନୀଳେନ୍ଦ୍ର—ମୁଁ ଚିନ୍ତା ଗ୍ଭର, କଥାଟା ତ ଖୁବ୍ ହାଲୁକା !

(ତଅପୋଇ କୃତ୍ରିମ କୋପକରି ଗ୍ଭଲିଯାଉଥିଲା । )

ହଁ ଯା—ଆଉ କାହିଁକି ରହିବୁ, ତୋର ଆଉ ଏଠି କିଏ ଅଛି ଯେ ?

ତଅପୋଇ—(ଫେଶ) ନୂଆବୋଉଜ—ଗ୍ରଗିଲୁ ?
(ଦାସୀ ଚମ୍ପୀ ଡାକ ଡାକ ପ୍ରବେଶ କଲ୍ ।)

ଚମ୍ପୀ—ଆଗୋ ସାନାମା' ! ଏଇଠି ତ, ମହିଆଣୀ-ମା କହୁଲେ—(ଅଟକଗଲ୍)

ମାଳେନ୍ଦ—କଅଣ କହୁଲେ ?

ଚମ୍ପୀ—ଆଗୋ କଅଣ ତ କହୁଲେ—ପୋଡ଼ଯାଉ ମୋ ମନ !

ମାଳେନ୍ଦ—ତୋ ମନ ପୋଡ଼ଯାଉ, ତୁ ପୋଡ଼ଯା ।

ଚମ୍ପୀ—ଯାଏଁ ଆଉ ଅରେ ପଗ୍ଚର ଆସେ—(ଯାଉ ଯାଉ କହୁ ବାଟରୁ ଫେରପଡ଼ ) ହୁଁ—ହୁଁ ମନେପଡ଼ଲ, ଦେଇକ ନେଇଯାଅ—ସର ଖାଇବେ ।

ତଅପୋଇ—(ଖଚେଇ ହେଲ୍ପଶ) ସର ଏଇନେ ଖାଇବେ ନାଇଁ—ଯାଃ ।
(ବଧବା ବ୍ରାହ୍ମଣୀର କହୁ କହୁ ପ୍ରବେଶ ।)

ବ୍ରାହ୍ମଣୀ—ଗ୍ରଧାବଲ୍ଲଭ ହେ ପାଶକର ! କେଉଁଠ ଅଛୁ କ ଲେ ସାନବୋଉ ! ବଗିଗ୍ଚ ଭିତରେ କଣ କରୁଚୁ ବା ?

ମାଳେନ୍ଦ—ବ୍ରାହ୍ମଣୀ-ନାନୀ କ ! (ପ୍ରଣାମ କଲେ)

ବ୍ରାହ୍ମଣୀ—ଅସ୍ତିସୁଲକ୍ଷଣୀ ହ' ମା—ଆହା, ଏଇ ଭଗଢ ଥାଉ । ସେ କଏ—ତଅପୋଇ ? ହୁଁ, ଆଛ କଏ ହୁଅନ୍ତା ! ତମେ ଦହେଁ ତ "କଡ଼ାଚେଲ ମେଣ୍ଢାବାଲ" ! ଏଇ ଭାବ ସବୁଦନେ ଥାଉ—ଭଲ, ଭଲ ।

ତଅପୋଇ—(ପଶହାସରେ) ଗ୍ରଧାବଲ୍ଲଭ ହେ, ପାଶକର !
(ଚମ୍ପୀ ପଛେ ପଛେ ଗ୍ଚଲଗଲ୍ ।)

ବ୍ରାହ୍ମଣୀ—ଯା' କହୁଲୁ ଝିଅ—ଗ୍ରଧାବଲ୍ଲଭ ହେ ପାଶକର ! ମ, ଗ୍ଚଲଗଲୁ କ ଝିଅ ? ହଉ—ଯା ଯା ! କଇ ଲେ ସାନବୋଉ ! ଝିଅର ତ ଆସି ବଅସ ହେଲ୍ । ତମ ଦେଢ଼ଶୁରମାନଙ୍କର କଅଣ ଜନ୍ଦ ଗ୍ରଙ୍ଗୁନାହିଁ ? ବାଙ୍କା, ଝିଅକୁ ମୋର କେହୁ ଖୁଣିବାକୁ ନାହିଁ—ରୂପରେ କଅଣ, ଗୁଣରେ କଅଣ ।

ମାଳେନ୍ଦ—(କଥାଟାକୁ ବାଆଁରେଇ ଦେବା ଉଦ୍ଦେଶ୍ୟରେ) ଠାକୁରଘର ଆଡ଼େ ଯାଇନା କ ନାନୀ ?

ବ୍ରାହ୍ମଣୀ—ନା—ବାହାଘରଟା ପରା ! ଖାଲି ତମମାନଙ୍କୁ ଟିକିଏ ଦେଖିଯିବି ବୋଲି ଏ ବାଟେ ପଶିଆସିଲି ।

(ସୁଭଦ୍ରା ଡାକ ଡାକ ପ୍ରବେଶ କଲେ)

ସୁଭଦ୍ରା—ତଅପୋଇ ! ତଅପୋଇ ! (ପ୍ରବେଶ) କାହିଁ ମ ସେ ? କଏ—ସାନବୋଉ ! ତଅପୋଇ କୁଆଡ଼େ ଗଲା କି ଲୋ ? କୋଉ ପହରୁ ସେ ଟିକିଏ ଧରି ଚାହିଁବସିଛୁ ! ପୋଡ଼ାମୁହାଁ ଚମ୍ପୀକି କହିଲି···

ନୀଳେନ୍ଦ୍ର—ତଅପୋଇ ଗଲା ପରା ଘରଆଡ଼େ ମହିଆଣୀ ଅପା !

ବ୍ରାହ୍ମଣୀ—ହଁ, ଗଲା ତ ଏଇନେ ।

ସୁଭଦ୍ରା—କଏ—ବ୍ରାହ୍ମଣୀ ନାନୀ, କେତେବେଳୁ ?

ବ୍ରାହ୍ମଣୀ—ଏଇନେ ଆସୁଛ ମ ! ହଇଲେ ମହିଆଣୀ, ତୁ ଜାଣିଥିବୁ—ତଅପୋଇନାଗି କଅଣ କୋଉଠି···?

ସୁଭଦ୍ରା—(ଟିକିଏ ବିରକ୍ତିରେ କଟାକ୍ଷ କରି) କଅଣ ନାନୀ ?

ବ୍ରାହ୍ମଣୀ—ନାହିଁ ମ—ତମ ଦେଢ଼ଶୂରମାନେ କଥାବାର୍ତ୍ତା ହଉ ନ ଥିବେ ?

ସୁଭଦ୍ରା—ସେ ସବୁ ଚର୍ଚ୍ଚାରୁ ତମକୁ କଅଣ ମିଳିବ ନାନୀ ? ଆ ସାନବୋଉ, ଏଠି କଅଣ କରୁଚୁ ? (ପ୍ରସ୍ଥାନ)

ବ୍ରାହ୍ମଣୀ—ରାଧାବଲ୍ଲଭ ହେ ପାରକର ! ମୁଁ ତେବେ ଯାଏ ସାନବୋଉ, ଆଉ ଦିନେ ଆସିବି । ରାଧାବଲ୍ଲଭ ହେ ପାରକର ! ( ପ୍ରସ୍ଥାନ )

(ନୀଳେନ୍ଦ୍ର ଖଞ୍ଜା ଭିତରକୁ ଚାଲିଗଲେ । )

## ଷଷ୍ଠ ଦୃଶ୍ୟ

[ବିଷ୍ଣୁପୁର ଗାଁ-ଦାଣ୍ଡ । କଥା କହୁ କହୁ ମଣିଭଦ୍ର, କପିଳ ମହାପାତ୍ର ଓ ହଂସ ରଥଙ୍କର ପ୍ରବେଶ । ]

ମଣି—ମହାପାତ୍ରେ ଆପଣେ, ଦେଖିଲ କି ?

କପିଳ—କଅଣ ?

ମଣି—ଆହେ ଦେଖିଲଣି କି ?

କପିଳ—କଅଣ ନା—ଦେଖିଲ ଟି, ଦେଖିଲଣି ଟି !
ହଂସ—(କପିଳକୁ) କଅଣ କହୁଚ ମଣିଆ ?
କପିଳ—କେଜାଣି କଅଣ କହୁଚ ସେ ?
ମଣି—(ଉଚ୍ଚସ୍ୱରରେ) ଆହେ—ବୋଇତ, ବୋଇତ !
ହଂସ—ହଇ, ସତ; ଢନକୋଡ଼ ସତର !
କପିଳ—କଅଣ ଢନକୋଡ଼ ସତର ଅଜା ?
ହଂସ—ମୋର ବଅସ । ଢନକୋଡ଼ ସତର ହେଲ ଟି । ମୁଁ ଜାଣିଚ—କହୁଚ ହାତୀ-ଘୋଡ଼ା-ପଇଦଲ-ଫଉଜ-ଯୁଦ୍ଧସାମଗ୍ରୀ ଘେନ ପାର-ହେଉଥିଲେ ।
କପିଳ—ଆହେ, କଏ ପାରହେଉଥିଲ, କୋଉଠି ?
ହଂସ—କଅଣ କହିଲୁ ନାତ—ସେଇ ଚଲିକା ମୁହାଣ ପଗ୍ର ପାରହେଲେ । ଆଦଗାଆଁ—ଆଦଗାଆଁ—ଯେଉଁ ଗାଁରେ ମାଣିକା ଗଉଡୁଣୀ ଘର । ସେଠି ପାଟଣା ବସିଲ ସେଇ ଗଉଡୁଣୀ ନାଁରେ, ଏବେ ସେଇ ଗାଆଁକୁ ମାଣିକାପାଟଣା ବୋଲୁଚନ୍ତ ।
ମଣି—ଆଚ୍ଛା କାଲ ସ୍ୱେ । ଆହେ, କଅଣ କଥା ପଡୁଚ, କଅଣ କହୁଚ ?
ହଂସ—କହୁଚ ପଗ୍ର—ଆମ ଶଶୁରଘର ସେଇଠି—ମୁଁ ଯାଇଥାଏ । କାଞ୍ଚି-ଯୁଦ୍ଧକୁ ଗଲବେଳେ ପୁରୁଷୋତ୍ତମ ମହାରାଜା ଯେତେବେଳେ ପାରହେଲେ ନାଇଁ—ମୁଁ ଦେଖିଚ—ଓଃ, କ ଆଟ—ପାଦତଳେ ମା' ବସୁଧା ଯେମିତ ଚୂନା ହେଇଯାଉଥାନ୍ତ—ଚଲିକା ପାଣି ଖାଲ ଦୋହଲୁଥାଏ ପଡ଼ ।
କପିଳ—ଆହେ ସେକଥା ପଡ଼ନାଇଁ ଅଜା !
ହଂସ—ଓ ? ଆଉ କୋଉ କଥା ?
ମଣି—ଯାଟଠେଇଁକ ଯାଇଥିଲ ପଗ୍ର ? ବୋଇତ—ବୋଇତ ଦେଖିଲ—କେଡ଼େ ବଡୁ ?
ହଂସ—(ଶେଷ କଥାଟି ମାତ୍ର ଶୁଣିପାରି) ବଡୁ କଥା କାହିଁକ କହୁଚୁ ନାତ ! ଗୁହିଁଲେ ଅଖି ଝୋସିହୋଇଯିବ ! ହାତୀ-ଘୋଡ଼ା-ସଇନ-ଶହ ଶହ, ହଜାର ହଜାର ପାରହେଉଥାଆନ୍ତ ଟି ।

କପିଳ—କୋଉଠିକା କଥା ନେଇ କୋଉଠି ଥୋଇଲଣି ?

ମଣି—ନାଇଁ ଅଜା—ମୁଁ କହୁଥିଲି ଆମ ସାହୁକାରଙ୍କ ବୋଇତ କଥା ।

ହଂସ—(ଶୁଣିପାରି) ସାହୁକାରଙ୍କ ବୋଇତ ? କାଲି ବଡ଼ପାହାନ୍ତାରୁ ମେଲିବେଟି ?

ମଣି—ହଁ, ଏ ସନ ନୂଆ ବୋଇତଟା ତିଆରିଚନ୍ତି ।

କପିଳ—ହଁ, ଗଲ୍ଥର ପଗ୍ର ତାଙ୍କ ବୋଇତଟା ଚଳକା ଭିତରେ ମାଡ଼ ବାଜି ଛତରଗ୍ରାଳ ହୋଇଗଲା—ସେଥିପାଇଁ ଏଥର ଏଡ଼େ ବଡ଼ କରି ତିଆରିଚନ୍ତି ।

ମଣି—ହେଲେ, ଏ ଖଣ୍ଡିକ ବଡ଼ ଡଉଲ ହୋଇଚ ।

ହଂସ—(କପିଳକୁ) କଅଣ କହୁଚ ମଣିଆ ?

କପିଳ—ନାଇଁ, ସେ କହୁଚ—ବୋଇତଟି ଖୁବ ସୁନ୍ଦର ହେଇଚ ଏଥର ।

ହଂସ—କଅଣ କହିଲୁ—ପଥର ? ହଁ, ପଥର ବି ବୁହନ୍ତରେ ବାପ ! ଜାଣିଲି—ଆମ ଆଦ ବସତ ଥିଲା ପଗ୍ରଚୀ ନଈ କୂଳରେ, ଆମ ଜେ-ପା' ଏଠିକ ଉଠିଅସିଥିଲେ । ସେ କହୁଥିଲେ ତାଙ୍କ ନନାଙ୍କ ଅମଳ କଥା —କୋଣାରଖ ବନ୍ଦରଠି ତାଙ୍କ ନନା କାମ କରୁଥାନ୍ତି—ତାଙ୍କର ଖୁବ୍ ପିଲାଦିନେ ସେ ଦେଖିଥିବା ଆମ ଜେ-ପା'ଙ୍କୁ କହୁଥିଲେ— କୋଣାରଖ ଦେଉଳ ତିଆରି ଗ୍ରଲିଥାଏ—ପଥର ସବୁ ବୋଇତ-ମାନଙ୍କରେ ବୋଝେଇ ହେଇ ଆସୁଥାଏ—ପଥର ତ ନୁହେଁ—କୁଆଡ଼େ ଗୋଟିଏ ଗୋଟିଏ ପାହାଡ଼ । ଏଥିରୁ ବୋଇତମାନଙ୍କର ବପୁ କଳିଲି ।

କପିଳ—ସେ କଥା ସତ ଅଜା ! ଆମ୍ଭେ କଣ ଦେଖୁନୁ—ନୀଳଗିରିରୁ ପଥର ସବୁ ଏଇ ଆମ ପିପିଲିଠି ବୋଇତରେ ବୋଝେଇ ହୋଇ କେତେ ଆଡ଼କୁ ଯାଉଚ ।

ହଂସ—ଏଥର ସାହୁକାରମାନେ କେଉଁଠିକି ମେଲୁଛନ୍ତି ବୋଇତ ?

ମଣି—ଲଙ୍କା ।

କପିଳ—ଜାଣିବାନରଟା ରୁ ! କହିଦେଲା ଲଙ୍କା । ମତେ ଜଣାଯାଉଚ ଏଥର ଯିବେ ଚୀନା ଦେଶ ।

ମଣି—ନାହିଁ ମ, ଚୀନା ଦେଶ ନା ଚହ୍ଲା ଦେଶ । ଅଢଗୁରେ ସିଆଣିଆ ଦେଖେଇ ହଉଚନ୍ଦ୍ର । ମୁଁ ତ ନକେ ଯେ ତାଠୁଁ ଶୁଣିଲି ।

କପିଲ—କାହାଠୁ ଶୁଣିଲୁ ?

ମଣି—ସେଇ ଟୋକାଠୁଁ ଆଜ୍ଞା ! ଲୁଲ ସାହୁକାର ଯାହାକୁ ପିପିଲଠୁଁ ଧରିଆଣିଥିଲେ—ତା ନାଁଟା ତ କଅଣ—ଭୁଲିଯାଉଚି ।

ହଂସ—(କପିଲକୁ) କଅଣ କହୁଚି ମଣିଆଁ ?

କପିଲ—(ବିରକ୍ତିରେ)କହୁନାହିଁ ହେ ! କଏ ଏ କାଲଟାକୁ ଏତେ ବୁଝେଇବ ?

ମଣି—(ହଂସକୁ) ଆଜ୍ଞେ, ସାଉକାରଙ୍କ ବଣିଜ କରିଯିବା କଥା ପଡ଼ୁଚି ।

ହଂସ—ହଇରେ ନାତ ! ବଳି-ସାଉକାରେ କହୁଥିଲେ ଏଥର ସେମାନେ ବ ବୋଇତ ଘିଠ ଯିବେ ବୋଲି ।

କପିଲ—ଯାଇଥା'ନ୍ତେ ଯେ, ଯିବେ ନାହିଁ ।

ହଂସ—କଅଣ କହିଲୁ ନାତ ! ନାହିଁ ? ବୋଇତ ନାହିଁ ତାଙ୍କର ?

କପିଲ—ଆଜ୍ଞେ, ବୋଇତ ଅଛୁ ଯେ ସାମଗ୍ରୀ ନାହିଁ ।

ମଣି—କାହିଁକି ଏ କାଲଟା ସାଙ୍ଗରେ ବକର ବକର ହେଉଚ ଆପଣ—ମୁଁ କିଛୁ ବୁଝିପାରୁନାହିଁ ।

ହଂସ—(କିଛୁ ଶୁଣିନପାରି) ଓ ?

କପିଲ—ଆଜ୍ଞେ ଅଜା, ବଳି-ସାଉକାରଙ୍କର ସାମଗ୍ରୀ-ପଟୁଆ ପଗ୍ର ସେଦିନ ଗଣ୍ଡରେ ବୁଡ଼ିଗଲା ।

ହଂସ—ହୁଁ, ଶୁଣିଚି ନାତ—ଶୁଣିଚି । ଆହା, ବହୁତ ଟଜ ନଷ୍ଟ ହେଇ ଯାଇଥିବ । କଅଣ ହେବ, ପରଦେଶୀ ବଣିକ ତ ଆସି ଏ ମୁଲକରେ ଖୁନ୍ଦ ହେଇଗଲେଣି । ଜାଣିଲି—ଦେଶୀ ବଣିକଙ୍କ ବେଉସା ବୁଡ଼େଇବେ । ହଇରେ ନାତ, ସେଉଟା କ ଜାତରେ—ପିପିଲଠି କୋଠିଢଆରୁଚ ?

ମଣି—ପଟୁଆବାଜ ।

କପିଲ—ବାଜ ନୁହେଁ ଗାଜ—ପଟୁଆଗାଜ ।

ମଣି—ବାଜ ବୋଲି ତ ମୁଁ ଶୁଣିଥିଲି; ଆଉ ତମେ ଆପଣ କହୁଚ ଗାଜ ?

ହଂସ—କଅଣ କହିଲୁ ନାଉ ? କ ଗାଛ ?

କପିଳ—ପଣ୍ଟୁଆ-ଗାଛ ।

ହଂସ—ସେଦିନ ଦାସ ମହାରଣାଏ ଆସିଥିଲେ, କହୁଥିଲେ—ଏମାନେ କୁଆଡ଼େ ଦକ୍ଷିଣ ଦେଶରେ ରତ୍ନ ବଣିଜ କରୁଥିଲେ । ସେଠୁ ତଡ଼ାଖାଇ, ଏବେ ଆମ ମହାରାଜାଙ୍କଠୁଁ ପଟ୍ଟା ଲେଖି ନେଇ ପିପିଲଠି ଗାଦି ମାଡ଼ି ବସିଲେଣି । ଚୀନା ତ ଥିଲେ—ତା ସାଙ୍ଗକୁ ଏଇ—କଅଣ କହିଲୁ ବାପ—କ ଗାଛ ?

( ଏଇ ସମୟରେ ନାଲୁ ମିଶ୍ରେ ସେ ବାଟଦେଇ କୁଆଡ଼େ ଚାଲି ଯାଉଥିଲେ )

ହଂସ—କଏ—ନାଲୁ କ'ରେ ! ଶୁଣ୍ ଶୁଣ୍ ନାଉ—ଶୁଣ୍ । ହଁ, ରୁ ତ ଜାଣିଥିବୁ—ହଇରେ, କ ଜାତରେ ସେ ପିପିଲଠେଇଁ କୋଠି ବନ୍ଧାଉଚ ?

ନାଲୁ—ପର୍ତ୍ତୁଗିଜ ।

ହଂସ—କଅଣ କହିଲୁ ନାଉ ?

ନାଲୁ—ମୁଁ ଏତେ ତମକୁ ବୁଝେଇ ପାରିବ ନାହିଁ —ମୁଁ ଯାଉଚ; ମୋର କାମ ଅଛୁ । (ଅଗ୍ରସର ହେଲେ)

କପିଳ—ହୁଃ, କାମ ! କାମ ଭିତରେ ତ ସାହୁକାର ଘର ଗୁଳଣ ।

ନାଲୁ—ମୁଁ ସାହୁକାର ଘରେ ଗୁଳଣ କରଚ, ହଇରେ କପିଳ ?

କପିଳ—ଗୁଳଣ ନ କଲେ ବୋଲକରା ହେଇଚ ।

ନାଲୁ—କପିଳା !

ମଣି—ଆହା ! ଚାଲ ଯାଉଚ କାହିଁକି ମିଶ୍ରେ ଆପଣେ ?

ହଂସ—କଅଣ, କଥା କଅଣ ମଣିଆ ?

ମଣି—ନାହିଁ ଅଜା, ମିଶ୍ରେ ଆପଣେ ସାହୁକାର ଘର ଧନ ଲୁଟି ଖାଉଛନ୍ତି ଯେ—ସେହି କଥା ପଡ଼ିଚ ।

ନାଲୁ—ମଣିଆ ! ଦାନ୍ତ ଝାଡ଼ିଦେବିଟି । ଚୋର ପୁଣି ଏତେ ବଡ଼ପ ।

ମଣି—ଏଁ—ଦାନ୍ତ ! ଖର ଝାଡ଼ିଲିବାଲ । ଅଭଗୁରେ ସିଆଣିଆ ଦେଖେଇ ହଉଚ ?

କପିଳ—ଆରେ ସେଥିରୁ କଣ ମିଳିବ ? ସ୍ନାନକାମ ଯେ କରେ ତା ପାଇଁ···

ନାଲୁ—ଦେଖ୍ କପିଳା ! ତୁ ମୋ ଜ୍ଞାତି, କଥା ବଢ଼ାନା କହୁଚି, ଭଲ ହେବନାହିଁ—ମୁଁ ନାଲୁ ମିଶ୍ର, ଏଇଟା ଗାଁଦାଣ୍ଡ ।

କପିଳ—କଣ କରିବ ? ମାରିବ ? ( ଚମକିଆସିଲେ ନାଲୁ ମିଶ୍ରଙ୍କ ପାଖକୁ । )

(ହଂସ ରଥ ଧରପକାଇଲେ )

ହଂସ—ହାଁ ହାଁ, ଏ କଅଣ ? ଏ କଅଣ ନାଡ !

( ନାଲୁ ମିଶ୍ର ରାଗରେ ଥରୁଥାଆନ୍ତି)

ହଂସ—ନାଲୁ, କଥା କଅଣ ? ଏ କଅଣ ? ଥରୁଚ୍ କାହିଁକି ? କଅଣ ହେଲା ?

କପିଳ—( ସେଠୁ ପଛେଇ ଆସି) ଡରିବ ନାହିଁ ? କପିଳ ମହାପାତ୍ରଟି ସ୍ୱେ—ଡରିବ ନାହିଁ ? ଆ ମଣିଆ ! ଡର ତ ଗଲଣି—ଏଥର ଗୁଡ଼ି-ଦେଲି, ଆ ।        (ପ୍ରସ୍ଥାନ)

ମଣି—(ନାଲୁ ଆଡ଼େ ଗୁହିଁ) ଅଢରୁରେ ସିଂଥାଣିଆ ଦେଖେଇ ହରିଚନ୍ଦ୍ର—
(ପ୍ରସ୍ଥାନ)

ନାଲୁ—ଖସିଗଲୁରେ ମାଇମୁହାଁ !

(ବିପରୀତ ଦିଗରେ ପ୍ରସ୍ଥାନ)

ହଂସ—ରହିଥା—ରହିଥା ନାଡ, ମୁଁ ଯିବି । ବାହ୍ମଣୀ ନାଗି କର୍ପୂର ଆଉ ନଡ଼ିଆ ମାଳପା ନ ନେଲେ ଫେର୍—ହୁଁଃ । ହବ ଖର୍ଚ୍ଚ ! କଅଣ କରିବ ? ଗୁର ଗୁର କଡ଼ା କଉଡ଼ି—ଖର୍ଚ୍ଚ ହବ । କଅଣ କରିବ, ବାଟ କଅଣ ଅଛି ?

(ନାଲୁ ମିଶ୍ର ଯାଇଥିବା ବାଟରେ ଗଲେ )

## ସପ୍ତମ ଦୃଶ୍ୟ

[ ଶମ୍ଭୁପୁର ଗାଁମୁଣ୍ଡରେ ସୁବର୍ଣ୍ଣରେଖା ନଈର ବୋଇତଭଉଡ଼ା ଘାଟ । ନଈକୂଳରୁ ବୋଇତ ଲଗିଥିବାଯାଏ ଖୁଣ୍ଟି ପୋତାଯାଇ ତା ଉପରେ ତକ୍ତା ଭଉଡ଼ାଯାଇଚ । ବୋଇତ ଉପରକୁ ଲାଗିଛୁ ଶିଢ଼ି ।

ପ୍ରକାଣ୍ଡ ଗଜ-ମୁଖୀ ସୁସଜ୍ଜିତ ବୋଇତ । ପାଲ ଟେକା ହୋଇନାହିଁ । ସାମଗ୍ରୀସବୁ ବୋଝେଇ ହୋଇସାରିଛୁ । ଅଳ୍ପ କେତେକ ଜଣ ସାଧବଙ୍କ ଲୋକେ ବୋହୁଆଣୁଆନ୍ତି ବୋଇତ ଉପରକୁ । ନଈକୂଳରେ ପିଲା, ବୁଢ଼ା, ସ୍ତ୍ରୀ, ପୁରୁଷ ବହୁତ ରୁଣ୍ଡ ହୋଇଛନ୍ତି । ପୂର୍ବଦିଗରେ ସିନ୍ଦୂର ଫାଟି-ଫାଟି ଆସୁଚ । ଦାସ ମହାରଣା ବୋଇତ ଉପରୁ ଓହ୍ଲାଇ ଆସି କୂଳରେ ଠିଆ ହୋଇ ଡାକଲେ— ]

ଦାସ—ଦଅ ବାବା, ରଘୁ ! ବଂଶୀ ! ଅଟ୍ଟାଳ ତୋଳିଦିଅ ।

(ଗମ୍ଭୀର ଭିତରୁ ରଘୁ ଓ ବଂଶୀ ବାହାରି ପାଲ ଟାଣିଦେଲେ । ସେଇକ୍ଷଣ-ବେଳେ କୁଳଶେଖର ମଧ୍ୟ ଗମ୍ଭୀରଭିତରୁ ବୋଇତର ପଟାତଳ ଉପରକୁ ଆସି ଦାସ ମହାରଣାକୁ ପଚାରିଲେ—)

କୁଳ—ମହାସା ! ହୋମ ସରିଚ—ପୁରୋହିତଙ୍କର ତ ଆଉ କିଛି କାମ ନାହିଁ ?

ଦାସ—'ଓଁ ଶୁଭମସ୍ତୁ' କହି ମନ୍ତ୍ରୋଦକରେ ମଙ୍ଗ ଲେପିଦିଅନ୍ତୁ । ପଞ୍ଚାମୃତ ଟିକିଏ ଟିକିଏ ଖାଇଆଜ୍ଞେ ଛୁଅନ୍ତୁ, ତମ ସାତଭାଇଙ୍କି ହୋମ-ନାଗକେଳରୁ ଟିପେ ଟିପେ ଦେଇ ବାହାରି ଆସନ୍ତୁ ।

କୁଳ—ହଉ ! (ଗମ୍ଭୀର ଭିତରେ ଅଦୃଶ୍ୟ ହେଲେ ।)

(ଜ୍ୟୋତିଷଙ୍କର ମଙ୍ଗଳାଷ୍ଟକ ପଢ଼ି ପଢ଼ି ପ୍ରବେଶ)

ଦାସ—କହୋ ଜଉତଷେ, ଏତେ ଉଚ୍ଛୁର ?

ଜ୍ୟୋତଷ—କିଛି ନାହିଁ, ଲଗ୍ନ ଢେର୍ ବେଳ ଅଛି ।

ଦାସ—ତେମେ ଗ୍ରଣିତକ ଦେଖି ଲଗ୍ନ ଠିକଣା କରିଚଟି ?

ଜ୍ୟୋତଷ—ତା ଆଉ କରିନାହିଁ ନା ?

ଦାସ—ହଉ, ତେମେ ବୋଇତ ଉପରକୁ ଯାଅ—ମଙ୍ଗରେ ଟିକଏ ପାଙ୍କି ଛୁଆଁଇଦେଇ ଆସି ହାଜର ଥାଅ ।

(ଶ୍ଳୋକ ପାଠ କରୁ କରୁ ଜ୍ୟୋତିଷ ବୋଇତ ଉପରକୁ ଉଠିଗଲେ । ସୁମନ୍ତ ଓ ତାଙ୍କ ସାଙ୍ଗରେ ୪।୫ ଜଣ ଅନୁଚର କେତେଗୁଡ଼ିଏ ବଡ଼ ବଡ଼ ପେଡ଼ି-ପେଟରା ମୁଣ୍ଡେଇ ପ୍ରବେଶ କଲେ ଓ ଜଣ ଜଣ କରି ସମସ୍ତେ ବୋଇତ ଉପରକୁ ଯାଇ ଗମ୍ଭୀରା ଭିତରେ ଅଦୃଶ୍ୟ ହେଲେ ।)

କୂଳ—ହଅ ରେ—ଚଞ୍ଚଳ ଉଠାଅ ! ବୋଇତଅାଳ, ମଙ୍ଗ ଧରି ବସ ! ତଣ୍ଡେଲ, ପାଣି-କୂପ ଦେଖିଚ ?

ତଣ୍ଡେଲ—(ଭିତରୁ) ଦେଖିଚି—ଠିକ୍ ଅଛୁ ।

ଦାସ—ବେଶ୍, ଏଥର ପାଣିଖଲାସି ଦୁଆର ବନ୍ଦ କରିଦିଅ ।

(ବୋଇତଅାଳ ମଙ୍ଗ-କୋଣକୁ ଯାଇ ମଙ୍ଗ ଧରି ବସିଲେ । କେତ-ଖୁଣ୍ଟରେ ବନ୍ଧାଥିବା ପତାକାଟି ଫିଟାଇ ଦିଆଯିବାରୁ ତାହା ଫର୍ ଫର୍ ହୋଇ ଉଡ଼ିଲା । ଏହି ସମୟରେ ସାଧବଘର ବୋହୂମାନେ ଓ ତାଙ୍କ କୁଟୁମ୍ବର ଆଉ ଗାଁର କେତେକ ଝିଅବୋହୂ ହାତରେ ବନ୍ଦାପନା ଥାଳି ଧରି ଗୀତ ଗାଇ ଗାଇ ପ୍ରବେଶ କଲେ !)

—ଗୀତ—

ବନ୍ଦନ ମେଳବ ଏବେ ମେଳୁଣି ହଅ ଆସି,
ଯାଉ ଭାସି, ଶୁଭ ମନାସି,
ଆମରି ଦେଶର ଶିରୀ ସରସେ ପରକାଶି ।
ସୁନୀଳ ସାଗରବୁକେ ଗରବେ ତୋଳି ଛତି,
ଦେଶେ ଦେଶେ ଖେଳବ ଲୋ ବଣିଜ ସାଥେ ପ୍ରୀତି
କାଳକାଳକୁ ଲୋ କଥା
ଘୋଷିବେ ଜଗତବାସୀ ।।

(ଗୀତ ଗାଇ ଗାଇ ସମସ୍ତେ ବୋଇତ ଉପରକୁ ଉଠି ଗମ୍ଭୀର ଭିତରେ ଅଦୃଶ୍ୟ ହେଲେ, କିଛିକ୍ଷଣ ପରେ ବୋଇତର ପଟାତଳ ଉପରକୁ ଆସିଲେ କୁଳଶେଖର ।)

କୁଳ—ମଉସା ! ତଅପୋଇ କାହିଁ—ତଅପୋଇ !

ଦାସ—ଏଁ ! ତଅପୋଇ ଆସିନାହିଁ ? ବୋହୂମାନଙ୍କୁ ପଚାରିଲୁ, ପଚାର, ପଚାର । ଆରେ ସୁମନ୍ତ ! ସୁମନ୍ତ, ଆରେ କଅଣ ହେଲା ।

(ବ୍ୟସ୍ତ ହୋଇଉଠିଲେ)

(ଅନ୍ୟ ଭାଇମାନେ ସମସ୍ତେ ବୋଇତ ଉପରେ ଦେଖାଦେଲେ—ସମସ୍ତଙ୍କ ମୁହଁରେ ଉଦ୍‌ବେଗର ଚିହ୍ନ । କୁଳଶେଖର ଗମ୍ଭୀର ଭିତରକୁ ପଶିଗଲେ—କିଛିକ୍ଷଣ ପରେ ବୋଇତ ଉପରୁ କୂଳକୁ ଓହ୍ଲାଇ ଆସିଲେ; ତାଙ୍କ ପଛେ ପଛେ ସୁମନ୍ତ ମଧ୍ୟ ।)

କୁଳ—ମଉସା ! ତଅପୋଇ, ସାନବୋହୂ ଘରେ ଅଛନ୍ତି । ମୁଁ ଯାଏ—

(ଚାଲିଯାଉଥିଲେ)

ଦାସ—ଆରେ ନାଁ-ନାଁ, ତୁ ଆଉ ଫେରିବୁ ନାହିଁ ବାପା ! ଅନୁକୂଳ କରି ଆସିଚୁ ପରା ।

ସୁମନ୍ତ—ତେମେ ଥାଅ ବଡ଼ଭାଇ, ମୁଁ ଯାଉଚି ।

ଦାସ—ଦେଖିଲୁ, ଗଲୁ, କଅଣ ହେଲା, ମାଆ ମୋର କାହିଁକି ଆସିଲା ନାହିଁ—(ସୁମନ୍ତ ଚାଲିଗଲେ ଓ କିଛିକ୍ଷଣ ପରେ ଫେରିଆସିଲେ । ତାଙ୍କ ପଛେ ପଛେ ତଅପୋଇକୁ ଧରି ବଧୂଶେଖର ଓ ମାଳେଇ ଧୀରେ ଧୀରେ ପ୍ରବେଶ କଲେ ।)

ବଧୂ—ତୁ ଯାହା ଯାହା କହୁଚୁ, ସବୁ ଆଣିବ ଭଉଣି, ସବୁ ଆଣିବ । ଆଠବାଙ୍କି ପୋହଳା, ଗଜମୁକ୍ତା, ତୋ ନୂଆଭାଉଜ ପାଇଁ କଅଣ କହୁଥିଲୁ—ମେଘଡମ୍ବରୁ ଶାଢ଼ି ପରା ?

ତଅପୋଇ—(କାନ୍ଦ କାନ୍ଦ ଭାବେ) ହୁଁ—

ବଧୂ—ଆଉ ତୋର କଳାମେଘୀ ପାଟ, ଯବ ଦ୍ୱୀପର ଶଙ୍ଖା—ସବୁ ଆଣିବ ଭଉଣି—ସବୁ ଆଣିବ । ତୁ କାନ୍ଦନା—ମୋ ସୁନାଭଉଣୀଟା ପରା !

ଦାସ—ମାଆ ମୋର କୋଉଠି ଥିଲୁ ବଧୂ ?

ବଧୂ—ବଗିଚ୍ଚ ଭିତରେ ବାପାଙ୍କ ମୂର୍ତ୍ତି ପାଖରେ ବସି କାନ୍ଦୁଥିଲା । ମୁଁ ଆଉ ମାଳେନ୍ଦ ଯେତେ ବୁଝେଇଲୁ ଆଉ ନ ବୁଝେ ।

ଦାସ—କହୁ ଚନ୍ଦ୍ରା ନାହିଁ ମା ! ବେଣୁଧର ଭାଇ ସିନା ଚାଲଗଲେ—ମୁଁ ତ ବସିଛୁ ମା ! ମୁଁ ଦଶଦନେ ପନ୍ଦରଦନେ ଆସି ତୋ ଖବର ବୁଝି ଯାଉଥିବ ।

(କୁଳଶେଖର ବ୍ୟସ୍ତ ହୋଇ ବୋଇତ ଉପରୁ ଓହ୍ଲାଇ ଆସିଲେ । ତାଙ୍କ ପଛେ ପଛେ ଉଜ୍ଜ୍ୱଳା ଓ ରାଜଶେଖର ।)

କୁଳ—ତଅପୋଇ ଆସିଚ ! କାହିଁ, ମୋ ସୁନାଭଉଣୀ କାହିଁ ?

ତଅପୋଇ—ବଡ଼ଭାଇ ! (ଆତୁର ହୋଇ ବଡ଼ଭାଇଙ୍କ କୁଣ୍ଢେଇ ପକାଇଲା ।)

କୁଳ—ଛି ମାଆ ! ଏତେ ଏତେ ବୁଝେଇଥିଲି, ତୁ ପୁଣି ଏମିତ ହଉଚୁ ? ତତେ ଘରେ ଛାଡ଼ିଦେଇ ଆମେ କଣ ବେଶି ଦନ ବଦେଶରେ ରହିପାରବୁ, କହିଲୁ ? ତୋର ଚନ୍ଦ୍ରା କଅଣ ? ସାତସାତଟା ଭାଉଜ ତୋର ଅଛନ୍ତି—ସାନଭାଉଜ ତୋର ଖେଳର ସାଥୀ !

ଦାସ—ଆଜ୍ଞେ ମା ! ବଣିକଜାତ—ବଣିଜ କରି ଯିବେ ତ···

କୁଳ—ହେଇଟି, ଦାସ ମଉସା ଅଛନ୍ତି, ଆମର ବାପ ସମାନ !

ଉଜ୍ଜ୍ୱଳା—ଆ' ମା—ମୋ ପାଖକୁ ଆ' ।

(ତଅପୋଇକି ନଜ ପାଖକୁ ଟାଣିନେଲେ ।)

କୁଳ—ଦେଖ ଉଜ୍ଜ୍ୱଳା, ତମକୁ ତ ସବୁ କହୁଚ—ତେମେ ହେଲ ସାତ ଯାଆଙ୍କ ଭିତରେ ବଡ଼—ତେମେ ତା'ର ମାଆ ସମାନ । ତେମେ ସବୁ ସମ୍ଭାଳବ, ତାର ଅଳି ଉଝଟକୁ ତେମେ ଦାୟୀ । କେବେହେଲେ କେହି ଯେମିତ ତାକୁ ଅନାସ୍ଥା ନ କରେ । ଅତି ଆଦରରେ ବଢ଼ିଆସିଚ ସେ—ଅଲଅଲୀ ଭଉଣୀ ଆମର ! ତେମେ ତ ସବୁ ଜାଣ—ଅଧିକ କଅଣ କହିବ···

(ଆଖିରେ ଲୁହ ଭରିଗଲା, କଥା ଆଉ କହିପାରଲେ ନାହିଁ !)

ଉଜ୍ଜ୍ୱଳା—ତେମେ କହୁଲେ କଅଣ ମୁଁ ଶୁଣିବ ? ମୁଁ ତାଙ୍କୁ ନଡ
ଠେଙ୍ଗେଇବ—ଖାଇବାକୁ ଦେବ ନାହିଁ—ପିନ୍ଧିବାକୁ ଦେବ ନାହିଁ—
ଶେଷରେ ତାଙ୍କୁ ଘରୁ ତଡ଼ିଦେବ ! କାହିଁକି ଏତେ ଶୋକ ! ଆମେ
ସବୁ କଣ ମଲୁଣି ? ଖାଲି ଭାଇ ! ଭାଇ ! ଭାଇ !

ତଅପୋଇ—ବଡ଼ଭାଉଜ !

ଉଜ୍ଜ୍ୱଳା—ମୋ ସୁନାଭଉଣୀଟି ପଦ୍ମ ! ଆଜ ପଦ୍ମ ବନରେ ଖୁସି ମନରେ
ଭାଇମାନଙ୍କୁ ମେଲଣି ଦେ ! ତୋ ଅଲଗୁଣ୍ଟିକୁ ଆମେ ପଦ୍ମ ସାତସାତଟା
ଭାଉଜ ରହୁଚୁ । ତୋ ନୂଆଭାଉଜ—ତୋ ପ୍ରାଣର ସାଥୀ ନୀଳେନ୍ଦ୍ର ଅଛୁ ।
ତୋ' ଖେଳ ସଣ ନଥିବ—ଦେଖିବୁ—ଭାଇମାନେ ବାହୁଡ଼ିଆସିବେ !

କୁଳ—ସବୁ ବୋହୂମାନଙ୍କୁ କହିଦେବ ଉଜ୍ଜ୍ୱଳା ! ତଅପୋଇକୁ କେହି
ଯେବେ କଚ୍ଛୁ ହେଳାକରେ ତାଙ୍କର ଭେଲା ବୁଡ଼ିବ । ହଁ, ତାଙ୍କ ମୁହଁ
ଆଉ ଆମେ ଚାହିଁବୁ ନାହିଁ ।

ଉଜ୍ଜ୍ୱଳା—ଏ କଥା କାହିଁକି କହୁଲ ଯେ ? ତମର କଅଣ ଭଉଣୀ, ଆମର
କଣ କେହି ନୁହେଁ ?

କୁଳ—ସେଇ କଥା ।

ଦାସ—କୁଳ ! ଲଗ୍ନ ହୋଇଗଲା !

କୁଳ—ହଁ ମଉସା ଯାଉଚ । ସୁମନ୍ତ ! ସୁମନ୍ତ ! ଆସ ଭାଇ ଏଣେ ।
( ସୁମନ୍ତ କୁଳଙ୍କ ପାଖକୁ ଆସିଲେ ) ଭାଇ ସୁମନ୍ତ ! ତେମେ ତ ଜାଣ
ତଅପୋଇ ଆମ ସାତଭାଇଙ୍କର ଆଖି । ବାପା ଆମର ସ୍ୱର୍ଗକୁ
ଚାଲିଗଲେ—ମୋ ଉପରେ ଲାଦିଦେଇଗଲେ ବୋଝ ! ହେଲେ ମାଆ
ମଙ୍ଗଳାଙ୍କ ବରଦ—ମତେ ମିଳିଗଲା ତମ ଭଳି ରତ୍ନ । ମୋର କେତେ
ଆଶା—କେତେ ଦମ୍ଭ !

ସୁମନ୍ତ—(ଚମକିତ ହୋଇ) ଏ କଣ କହୁଚ ବଡ଼ଭାଇ !

ଉଜ୍ଜ୍ୱଳା—କଥା ନୁହେଁ କି କାହାଣୀ ନୁହେଁ । ମାଆଙ୍କର ଯେମିତି ବରଦ—
ତାଙ୍କୁ କଏ ଭାଙ୍ଗିଦେଇ ପାରିବ, କହୁଲ ?

ସୁମନ୍ତ—ବଡ଼ଭାଉଜ !

କୁଳ—ମୁଁ ଜାଣେ, ତମେ ଆମର ସେ ଆଶା ଭାଙ୍ଗିଦେବ ନାହିଁ—ଆମ ସାତଭାଇଙ୍କର ସୁନାର ସ୍ୱପ୍ନକୁ ଚୂନା କରିଦେବ ନାହିଁ । ତେମେ ଚହଲ—ତଅପୋଇ ତମର । ତେମେ ତାକୁ ଦେଖିବ—ତାର ମନର ଦୁଃଖ ସେ ଭୁଲିଯିବ ।

ସୁମନ୍ତ୍ର—ହେଲେ ବଡ଼ଭାଇ ! ମୋ କଥା ତ ତେମେ···

ରାଜ—ଆଉ, ଆଉ, ଲଗ୍ନ ଗଡ଼ିଯାଉଚ, ଆଉ ତମର କୌଣସି କଥା କ କାହାଣୀ ଶୁଣିବାକୁ ବେଳ ନାହିଁ କ ଧୈର୍ଯ୍ୟ ନାହିଁ—ନା—କଣ କହୁଚ ବଡ଼ଭାଇ ?

ଉଜ୍ଜ୍ୱଳା—ଠିକ୍ କଥା ତ ।

ବଧୂ—ଦେଖ ସୁମନ୍ତ୍ର, ମୁଁ ତମକୁ ଏଇନେ କିଛି କହୁନାହିଁ—ବାହୁଡ଼ିଲେ ଯାଇ ତମର ମୋର କଥାବାର୍ତ୍ତା ।

ଦାସ—ଦେଖ କୁଳ, ବଧୂ, ରାଜ ! ଲଗ୍ନ ଗଡ଼ିଯାଉଚ ଯେ !

( ଭାଇମାନେ ବୋଇତ ଉପରକୁ ଚାଲିଯାଉଥିବାର ଦେଖିତଅ ପୋଇ —ଧାଇଁଗଲା ସେମାନଙ୍କ ଆଡ଼େ )

ତଅପୋଇ—ଭାଇ ! ଭାଇ !

( ପଡ଼ିଯାଉଥିଲା, ବଧୂ ତାକୁ ଧରିପକାଇଲେ । )

ବଧୂ—ଆରେ, ଏ କଣ ! ମୁଁ କାହିଁକି କାନ୍ଦିଲ ! କାନ୍ଦିବ ନାହିଁ ବୋଲି କହିଥିଲି ଯେ ! ଆରେ—ଏ କଣ ! ନା—ଆଉ ନୁହେଁ, ଆଉ ନୁହେଁ ।

(ବୋଇତ ଭିତରକୁ ଚାଲିଗଲେ । ଦାସୀ ଚମ୍ପୀ ଧରିଥିବା ବନ୍ଦାଣ- ଥାଳି ତଅପୋଇ ଆଡ଼କୁ ବଢ଼େଇଦେଲା ।)

ଚମ୍ପୀ—ଦେଈ !

ତଅପୋଇ—ଭାଇ !

କୁଳ—କଅଣ ଚନ୍ଦନଟିକା ଦେବୁ—ଦେ' ।

ଦାସ—ଆହା ! ଏଠି ଆଉ ସେ ସବୁ କାହିଁକି ? ବୋଇତ ଭିତରେ ସଭିଏ ଅଛନ୍ତି—ମାଆକୁ ମୋର ନେଇଯାଅ—ସେଇଠି ସଭିଙ୍କି ଟୀକା ଦେଇ ଅସିବ ।

( ଉଜ୍ଜ୍ୱଳା ଚଅପୋଇକ ଧରି ନେଇଗଲେ । କୁଳ, ରାଜ ପ୍ରଭୃତି ମଧ୍ୟ ଚାଲିଗଲେ ବୋଇତ ଭିତରକୁ । ଜ୍ୟୋତିଷ ମନ୍ତ୍ର ପଢ଼ି ପଢ଼ି ଓହ୍ଲେଇ ଆସିଲେ; କୂଳରେ ଛିଡ଼ାହୋଇ ରହିଲେ କେବଳ ଦାସ ମହାରଣା ଆଉ ସୁମନ୍ତ । ସାଧବବୋହୂମାନେ ଗୀତ ବୋଲି ବୋଲି ବନ୍ଦାଣ ଦୀପ ଧରି ବୋଇତ ଉପରୁ ଓହ୍ଲାଇ ଆସିଲେ । ପଛେ ପଛେ ଚଅପୋଇକ ଧରି ଚମ୍ପୀ ମଧ୍ୟ ଓହ୍ଲେଇ ଆସିଲା—ସମସ୍ତେ କୂଳରେ ଛିଡ଼ାହୋଇ ବୋଇତ ବନ୍ଦେଇବାକୁ ଲାଗିଲେ, ଗୀତ ବୋଲି । ବୋଇତର ପଟାତନ ଉପରେ ସାତଭାଇଯାକ ଛିଡ଼ାହୋଇଥାନ୍ତି । କୂଳରେ ଚମ୍ପୀ କାନ୍ଧରେ ଭରାଦେଇ ଛିଡ଼ାହୋଇଥାଏ ଚଅପୋଇ—କାନ୍ଦୁଥାଏ । )

—ଗୀତ—

( ବୋଇତ ଭିତରେ ପ୍ରଥମ ଦୁଇ ପଦ ଗାଇସାରି, ଶେଷପଦକ ଗାଇ ଗାଇ ସମସ୍ତେ ବୋଇତରୁ ଓହ୍ଲାଇ ଆସିଲେ ।)

ଆସ ମଙ୍ଗ-କୋଣେ ବଧବା ମଙ୍ଗଳା
ଅଭୟ ବର-ଦାୟିକା,
ସାଧବକୁଳର ସାହା ସେ ଜନନୀ
ସର୍ବ ଶୁଭ ପ୍ରଦାୟିକା ।

ଶୁଣ ଲୋ ଜନନୀ ! ମାଗୁଣି—
ପୁଦଣୀ ଡାଳିବୁ କାତ୍ୟାୟିନୀ;
ଶୁଭେ ମଙ୍ଗ ଧରୁ ଧରି,

ଶୁଭେ ଫେରାଇ ଆଣ, ସୁଦିନେ ସନମାନ—
ଏ କାଠ-ଶିରେ ଦଅ ବରଷି ଗୋ ॥

ଦାସ—-ହଅରେ—ନଙ୍ଗର ଉଠାଅ ।

(ବୋଇତରେ ନଙ୍ଗର ଉଠିଲା, କୁଳଶେଖର ବୋଇତର ପଟାତଳ ଉପରେ ଛିଡ଼ାହୋଇ ଶଙ୍ଖଧ୍ୱନି କଲେ; ତୀରରେ ସ୍ତ୍ରୀଲୋକମାନେ ହୁଳହୁଳି ଦେଲେ—ବୋଇତ ଚାଲିଲା ସୁବର୍ଣ୍ଣରେଖାର ବୁକୁ ଚିରି ।)

ସମସ୍ତଙ୍କ ତୁଣ୍ଡରେ—ଜୟ ମା' ମଙ୍ଗଳା !

ଦାସ ମହାରଣା—ଜୟ ମା' ମଙ୍ଗଳା ।

---

## ଦ୍ୱିତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

[ବିଧବା ବ୍ରାହ୍ମଣୀର କୁଟୀର । କୁଟୀର ଦ୍ୱାର ଅର୍ଦ୍ଧୋନ୍ମୁକ୍ତ—ଭିତରେ ଖଟଉପରେ ମହେନ୍ଦ୍ର ରାୟ ଶୋଇଛନ୍ତି । କୁଟୀର ବାହାରେ ପ୍ରଶସ୍ତ ଅଗଣା । ପଛପଟେ ପ୍ରାଚୀର । ପ୍ରାଚୀର ଦେହରେ ଗୋଟିଏ ଦ୍ୱାର । ଶେଷରାତ୍ରିର ଜହ୍ନଆଲୁଅରେ ସବୁ ଅସ୍ପଷ୍ଟ ଦିଶୁଚି । ପ୍ରାଚୀର-ଦ୍ୱାର ଖୋଲି ଅତି ସନ୍ତର୍ପଣରେ ପ୍ରବେଶ କଲେ କପିଳ ମହାପାତ୍ର—ପଛେ ପଛେ ତାଙ୍କର ଖୁଡ଼ୀ ବିଧବା ବ୍ରାହ୍ମଣୀ । କପିଳ ମହାପାତ୍ର ପ୍ରଥମେ ମହେନ୍ଦ୍ର ରାୟ ଶୋଇଥିବା କୁଟୀରଟିର ଭିତରକୁ ଲକ୍ଷ୍ୟକଲେ, ତାପରେ ତା ଭିତରେ ପଶିଲେ । ବ୍ରାହ୍ମଣୀ ବାହାରେ ରହିଲେ, କିଛିକ୍ଷଣ ପରେ କପିଳ ଫେରିଆସିଲେ—ସେତେବେଳେ ତାଙ୍କ ହାତରେ ଖଣ୍ଡିଏ ଚିଠି । ପଛକୁ ଚାହିଁ ଦେଖିଲେ ମହେନ୍ଦ୍ର ରାୟ ସେହିପରି ଶୋଇଛନ୍ତି । ଖୁଡ଼ୀ ଓ ପୁରୁଷ ଦୁହେଁ ପ୍ରାଚୀର-ଦ୍ୱାର ଦେଇ ଭିତରଆଡ଼େ ଚାଲିଗଲେ । କିଛି ସମୟ ପରେ ସ୍ୱପ୍ନାଚ୍ଛନ୍ନ ଭାବରେ ମହେନ୍ଦ୍ର ରାୟ କହିଉଠିଲେ ।]

ମହେନ୍ଦ୍ର—କିବୁ ନାହିଁ ସୁମନ୍ତ ? ତୋର ରାଧା ସେ ତୋର ପାଇଁ ଚାହିଁ-ବସିଚି ! ନା—ନା—ଅଭିମାନ କରନା—ବୃଥା ଅଭିମାନ କରନା—ଚ ମୋ ସାଙ୍ଗରେ ଆ !

(କିଛି ସମୟ ପରେ ଚମକିତ ହୋଇ ଉଠିବସିଲେ ବିଛଣା ଉପରେ—ସେତେବେଳକୁ ସକାଳ ହୋଇଆସିଲାଣି ।)

ମହେନ୍ଦ୍ର—(ଦୀର୍ଘନିଶ୍ୱାସ ପକାଇ) ସ୍ୱପ୍ନ !—ଜୟ ମା ଦର୍ଗାମା ! ତୋ ଇଚ୍ଛା ପୂର୍ଣ୍ଣ ହେଉ ମା !

(ଉଠିଆସିଲେ ଅଗଣାକୁ, ଆକାଶକୁ ଚାହିଁଲେ ।)

ମହେନ୍ଦ୍ର—ଭୋର୍ ହୋଇଗଲଣି ! ଆଉ ନିଦ ହେବ ନାହିଁ । (କିଛିକ୍ଷଣ ପରେ) ସତେ ମୋ ଆଶା ପୂରିବ ? ତୋ ଇଚ୍ଛା ମା !

(ସକାଳ ହେଲ, ଦୂରସ୍ଥ ମନ୍ଦିରରେ ବାଜିଉଠିଲ ଘଣ୍ଟା ।)

କପିଲ—(ପ୍ରବେଶ କରି) ଏଇ ତ ଆପଣ ଉଠିଲେଣି !

ମହେନ୍ଦ୍ର—ହଁ ମହାପୁରୁ ! ମନ ଯେମିତି ଚଞ୍ଚଳ ଅଛି—ନିଦ ଆଉ ହେଉଚି କୋଉଠି !

କପିଲ—ଆମେ ବି ରାତିରେ ଭଲକରି ଶୋଇନୁ ମହାଶୟ ! ଖୁଡ଼ୀର ମୋର ଧର୍ମିଷ୍ଠ ପ୍ରାଣ—ରାତିଯାକ ତ ତାର ଚିନ୍ତା—ଆପଣଙ୍କର କାଳେ କିଛି ଅସୁବିଧା ହେଉଥିବ । ଏବେ ରାତି ନ ପାହୁଣୁ ମୋ ପାଖେ ଲଗେଇଚି "ଯା ବାପ, ଆଗ ଅତିଥିଙ୍କ ଖବର ବୁଝି ଆ । ଗରିବ ଦୁଃଖୀ ଆମେ—ଆମ କୁଡ଼ିଆରେ ଅତିଥି ସେ ।"

ମହେନ୍ଦ୍ର—ନା—ନା, ମୋର କିଛି ଅସୁବିଧା ହୋଇନାହିଁ; ବରଂ ରାତିଟା ମୁଁ ଖୁବ୍ ଆରାମରେ କଟେଇଲି । ଆପଣମାନଙ୍କର ଆଶ୍ରୟ ନ ପାଇଥିଲେ କାଲି ରାତିଟା ବିଦେଶ ଭୂଇଁରେ ମୁଁ ଯେ କୋଉଠି କେମିତି କଟେଇ-ଥା'ନ୍ତି !

କପିଲ—ତା' ସତ ! କାଲି ଯେତେବେଳେ ଆପଣ ଆସି ଆମ କୁଡ଼ିଆରେ ଧକ୍କା ମାଇଲେ—ମୁଁ ତ ଟିକିଏ ଡରିଗଲି, ଜାଣିକି ନା—ସେତେ ରାତିରେ ତ ଏ ଗାଆଁ ଭିତରେ କେହି ଚେଇଁନଥାନ୍ତି । କାଳେ କେହି ଚୋର ଖଣ୍ଡେ ହୋଇଥିବ !! ହେଲେ ଖୁଡ଼ୀର ମୋର ଧର୍ମିଷ୍ଠ ପ୍ରାଣ—ପାଖେ ପାଖେ କହୁଚି—"ନା ବାପ, ଦୁଆର ଖୋଲି ଦେଖ୍, କାଳେ କେହି ବିଦେଶୀ ବାଟ ଭୁଲି···"

ମହେନ୍ଦ୍ର—ବାଟ ତ ମୁଁ ଭୁଲି ନଥିଲି—ତେବେ ପିପିଲିରୁ ବାହାରୁ ବାହାରୁ ରାତି ହୋଇଯାଇଥିଲା; ଜରୁରୀ କାମ—ମନ ଚଞ୍ଚଳ—କୌଣସି କଥାକୁ ନ ଭାବି ରାତାରାତି ବାହାରି ପଡ଼ିଲି ।

କପିଲ—ହେଲେ, ସୌଭାଗ୍ୟକୁ ବାଟଟା ଠିକ୍ ଧରିପାରିଚନ୍ତି ।

ମହେନ୍ଦ୍ର—ନା, ବାଟ ବିଷୟରେ କିଛି ଗୋଳମାଳ ହେବାର ନ ଥିଲା । ବନ୍ଦରର ଲୋକେ ମତେ ସେତିକ ସାହାଯ୍ୟ କରିଥିଲେ । ସେମାନେ ନ କହିଥିଲେ ମୁଁ ବା ଜାଣନ୍ତି କେମିତି । ଏଇ ବିଷ୍ଣୁପୁର ଗାଆଁରେ ଆସି ସେ···

କପିଳ—ରହିଛ ବୋଲି ! ସେ କଥା ସତ !

ମହେନ୍ଦ୍ର—ବାକି, ଏଠି ପହଞ୍ଚି ଦେଖିଲି ଗାଁଟାଯାକ ଯେମିତି ଶୂନଶାନ୍ ! କଣ କରିବି—ରାତିଟା କୋଉଠି ତ ଆଶ୍ରା ନବାକୁ ହେବ ! ଭାଗ୍ୟେ ଆପଣଙ୍କ ଦୁଆରେ ପହିଲେ ପହଞ୍ଚିଛି !

କପିଳ—ସେ କଥା ଠିକ୍ । ଖାଲି ଖୁଡ଼ୀ ମୋର ରହିଛ ବୋଲି, ନ ହେଲେ ଏ ଗାଁରୁ ଧର୍ମ-କର୍ମ କୁଆଡ଼େ ଲୋପ ପାଆନ୍ତାଣି ! ଯାଉନ୍ତୁ ସେ କଥା—ଆପଣ ଏଇନେ ମୁହଁହାତ ଧୋଇ ସ୍ନାହାନ-ପ୍ରକାର କରାନ୍ତୁ ।

ମହେନ୍ଦ୍ର—ମତେ ଚଞ୍ଚଳ ଫେରିଯିବାକୁ ହେବ ମହାପ୍ରଭୁ ! ବାଟ ତ କମ୍ ନୁହେଁ—ଏଠି ଆଉ ଡେରି କଲେ ଚଳିବ ?

କପିଳ—କିଛି ଚିନ୍ତା ନାହିଁ ! ଆପଣ ତ ଖାଲି ସୁମନ୍ତ ସାଙ୍ଗରେ ଦେଖାକରି—କଅଣ ଚିଠି ଆଣିଚନ୍ତି ପତ୍ର କହୁଥିଲେ ?

ମହେନ୍ଦ୍ର—ହଁ ମହାପ୍ରଭୁ !

କପିଳ— ସେଇ ଚିଠିଖଣ୍ଡିକ ତାଙ୍କୁ ଦେଇଯିବେ ?

ମହେନ୍ଦ୍ର—ନା ମହାପ୍ରଭୁ, ଖାଲି ଚିଠି ଖଣ୍ଡିକ ତାଙ୍କୁ ଦେଇଯିବା ପାଇଁ ମୁଁ ଏତେ ବାଟ ଆସିନାହିଁ—ତାଙ୍କୁ ସାଙ୍ଗରେ ନେଇ ଯିବି ।

କପିଳ—ନେଇଯିବେ ? ହଉ,ଆଚ୍ଛା ମହାଶୟ ! ଆମେ ଶୁଣୁଚୁ—ସେ କୁଆଡ଼େ ଜାତିରେ କ୍ଷତ୍ରିୟ ?

ମହେନ୍ଦ୍ର—ଠିକ୍ ଶୁଣିଚନ୍ତି । ସେ କ୍ଷତ୍ରିୟ—ମୟୂରଧ୍ୱଜ ରାଜବଂଶରେ ତାର ଜନ୍ମ ।

କପିଳ—ସତେ ! ହଉ, ଆସନ୍ତୁ ଆପଣ—ବାରପଟକୁ ଆସନ୍ତୁ ।

(ମହେନ୍ଦ୍ରଙ୍କୁ ସାଙ୍ଗରେ ନେଇ କପିଳ ପାଚେରି-ଦ୍ୱାର ବାଟେ ଅଦୃଶ୍ୟ ହେଲେ ।)

(କିଛି ସମୟ ପରେ କପିଳର ପୁନଃ ପ୍ରବେଶ; ପଛେ ପଛେ ତାଙ୍କ ଖୁଡ଼ୀ ବ୍ରାହ୍ମଣୀ, କପିଳ ହାତରେ ସେଇ ଚିଠି ।)

ବ୍ରାହ୍ମଣୀ—ହଇରେ ପଢ଼ିଲୁ ସବୁ ?

କପିଳ—ନାଁ ଖୁଡ଼ୀ । ସବୁ କେତେବେଳେ ପଢ଼ିଲି ? ମନ ଛନ-ଛନ ହଉଚ, ସେ ଲୋକଟା କାଲେ ଚିଠିଟା ଖୋଜିବ ।

ବ୍ରାହ୍ମଣୀ—ଆଉ କହିଲୁ ବାହାହେଇଚ ବୋଲି ?

କପିଳ—ସେ କଥା ଜଣାପଡ଼ୁନାଉଚ ଲେଖାରୁ ।

ବ୍ରାହ୍ମଣୀ—ହୁଁ, ମତେ କାହିଁକି ସେମିତି-ସେମିତି ଜଣାପଡ଼ୁଥିଲା ! ହଇରେ, ନାଁ କଅଣ ଲେଖିଚ ବା ?

କପିଳ—(ପଢ଼ି) ପ୍ରାଣର "ସୁ—" ।

ବ୍ରାହ୍ମଣୀ—ସୁ କଅଣ ରେ ?

କପିଳ—ସୁ ମାନେ 'ସୁମନ୍ତ' ହୋଇଥିବ ।

ବ୍ରାହ୍ମଣୀ—ନାହିଁ ବା, ସିଏ ଲେଖିଚ—ତା' ନାଁ ।

କପିଳ—ତା ନାଁ ତ...

ବ୍ରାହ୍ମଣୀ—ଆଉ ପଢ଼ିଲୁ କଅଣ ବା ?

କପିଳ—(ପଢ଼ି) ତଳେ ତ ଲେଖିଛୁ "ତମର—ସ— ।"

ବ୍ରାହ୍ମଣୀ—ସ—କଅଣ କରେ ?

କପିଳ—କେଜାଣି ଖୁଡ଼ୀ !

ବ୍ରାହ୍ମଣୀ—(ଛନଛନ ହୋଇ ପଛଦ୍ୱାରକୁ ଚାହିଁ) ହଇରେ, ତାର ପିଲାଝିଲା ଅଛନ୍ତି କି ?

କପିଳ—ସେ କଥା ତ କିଛି ଲେଖା ନାହିଁ ଚିଠିରେ । ତେବେ ସେ ମାଇକିନିଆର ମା' ମଣିଷିବା କଥା ଅଛୁ ।

ବ୍ରାହ୍ମଣୀ—ଟୋକାର ଶାଶୁ ମଲାଣି ତେବେ ? (ପୁଣି ପଛଦ୍ୱାରକୁ ଚାହିଁ) ହଇରେ, ସେ ଟୋକା ଏମିତି ଘରଦ୍ୱାର ଗ୍ରାମ ବୁଲୁଚ କାହିଁକି ? ସେ କଥା କଅଣ ଲେଖିଚ କହିବୁଟି ?

କପିଳ—କହୁଚ ପଶ୍ନ—ସବୁ ପଢ଼ିପାରନାହିଁ ! ଏଣେ ଲୋକଟା ଯୋଉଠୁ ଉଠିପଡ଼ିଲା ମତେ ତ ଡର ମାଡ଼ିଲା ଖୁଡ଼ୀ !

ବ୍ରାହ୍ମଣୀ—ଡର କଅଣ ରେ—ଆମେ ଚୋର ନା ତସ୍କର ।

କପିଳ—ତେବେ ଠିକେ ଠିକେ ଯା ପଢ଼ିଲି—ତହିଁରୁ ବୁଝାପଡ଼ୁଛି—ସେ ଟୋକା ତା ଶ୍ୱଶୁରଘରୁ ଛାଡ଼ିଦେଇ ପଳେଇ ଆସିଚ ।

ବ୍ରାହ୍ମଣୀ—ସେ କଥା ତ ବୁଝିଲି, କାହିଁକ—ନା···

କପିଳ—ମତେ ଲାଗୁଚ—ଏଇଟା ତ ଜନ୍ମମ ଟୋକା—ପିଲାଛୁଆ, ଶ୍ୱଶୁର ଏମାନଙ୍କୁ ସବୁ ପୋଷି ପାରିଲାନାହିଁ, ସେଥିଲାଗି...

ବ୍ରାହ୍ମଣୀ—ତେଜ୍ୟା କରି ପଳେଇ ଆସିଚ । ସେସ୍ତା ପୁଅ ସେସ୍ତା; ଏଠି ସିନା ସାହୁକାର ଘର ଧନ ଅଛୁ, ବର୍ଷ ବର୍ଷ ଗେଙ୍ଗା ମାରୁଚ—ହେଲେ ପୁଅ, ଏଡ଼େ ବଡ଼ଘରର ମହତ ବୁଡ଼ିଲା । ଯେଉଁ ଟୋକା ! ରୁ ତ ପୁଅ, ତତେ କଅଣ କହିବ ତା ଗୁଣ ।

କପିଳ—ଆଲୋ, ଗୁଣ ଆଉ କଅଣ କହିବୁ ? ସେ ତ ଜାଣିଚ—ତାକୁ ବାହା ହବ ।

ବ୍ରାହ୍ମଣୀ—ସତେ ପୁଅ, କ କାଳ କ ହେଲାରେ ! ବାହାହେଲା ଝିଅଟାକୁ ଘରେ ପୁରେଇ—ଛି, ଛି, ଛି, ! ଏଇଲେ ଏ କଥାଟି ପ୍ରଘଟ ହେଲେ ଗାଁଟି ଯାକର ମହତ ବୁଡ଼ିବ ।

କପିଳ—ହେଲେ ଖୁଡ଼ୀ, ସେମାନେ ତ ଜାଣିନାହାନ୍ତି ଏ ସବୁ ଭିତର କଥା ?

ବ୍ରାହ୍ମଣୀ—କେଜାଣିରେ ପୁଅ ! ବାକ, ବାହାଘର ପାଇଁ ସବୁ ଠିକ୍‌ଠିକଣା ହୋଇ ରହିଚ, ଖାଲି ସାହୁକାରମାନେ ବଣିଜରୁ ଫେରିଲେ ହବ । ଛି, ଛି, କ ବଙ୍ଗିଟଣ କଥା !

(ଏହି ସମୟରେ ଆରପଟ ଅଗଣାରେ ମହେନ୍ଦ୍ର ଗସ୍ତ କାଶିଲା ପରି ଶୁଣାଗଲା । କପିଳ ଓ ବ୍ରାହ୍ମଣୀ ଚମକି ଉଠିଲେ ।)

ବ୍ରାହ୍ମଣୀ—(ନମ୍ରସ୍ୱରରେ) ରୁ ଯା' ପୁଅ—ରଖିଦେ ଚିଠିଟା—ମୁଁ ଦେଖୁଚ । (ପାଚେରିଆଡ଼େ ସଙ୍କେତ କଲେ)

( କପିଳପୂର୍ବୋକ୍ତ କୁଟୀର ଭିତରକୁ ଯାଇ ଚିଠିଟି ରଖିଦେଇ ଆସିଲେ ।)

ବ୍ରାହ୍ମଣୀ—ଦେଲୁ ରଖି ?

କପିଳ—(ମୁଣ୍ଡଟାକୁ ହଁ କଲେ ।)

ବ୍ରାହ୍ମଣୀ—ହଇରେ, ସେ ଟୋକାର ଘର କେଉଁଠି ମ ?

କପିଳ—ସେ ଅନେକ ବାଟ ଖୁଡ଼ୀ—ତାମ୍ରଲିପ୍ତରେ ! ତା ଗାଁ ନାଁ ତ କଅଣ କହିଲା—ହଁ, ହଁ, ସୁନାରପୁର !

ବ୍ରାହ୍ମଣୀ—ଆଉ ସେ ଲୋକଟାର ?

କପିଳ—ସ୍ତ୍ରୀ ଘର ବ ସେଇ ଗାଁରେ ହୋଇଥିବ । ହଁ, ଆଉ ଗୋଟିଏ କଥା ତ ଚିଠିରେ ଅଛୁ—ତତେ କହିନାହିଁ ଖୁଡ଼ୀ ! ତା ଶ୍ୱଶୁରଘର କଣ ଘୋର ଦରିଦ୍ରଦୁଃଖ ହୋଇଚ ଯେ—

ବ୍ରାହ୍ମଣୀ—ସେ ଚିଠି ନେଇ ଆସିଚ କଅଣ···

କପିଳ—ତାକୁ ନେଇଯିବ ପଗ୍ର !

ବ୍ରାହ୍ମଣୀ—କହୁନୁ ସେ କଥା !

କପିଳ—ହଇଲେ ଖୁଡ଼ୀ, ସେ ଟୋକା କାହିଁକି କଥାଟାକୁ ଲୁଚେଇଚ ? ଖାଲି କିଛି ଧନ ହାତେଇବା ପାଇଁ ସିନା ?

ବ୍ରାହ୍ମଣୀ—ଆଉ କଅଣ ଖବରଟା କ ପୁଅ ? ସତେ କଅଣ ସେ ଆଉ ଥରେ ବାହା ହବ ?

କପିଳ—ବାହାଘର ପାଇଁ ପଗ୍ର ସବୁ ଠିକଣାହୋଇ ରହିଚ ବୋଲି କହୁଚ ?

ବ୍ରାହ୍ମଣୀ—ଠିକଣା ସିନା ହୋଇଚ, ହେଲେ ସେ ଟୋକାର ସେଥିକି ମନ ନାହିଁ ବା !!

(ଏହି ସମୟରେ ମହେନ୍ଦ୍ର କାଶି କାଶି ପ୍ରବେଶ କଲେ ।)

ବ୍ରାହ୍ମଣୀ—ରାଧାବଲ୍ଲଭ ହେ ପାରକର ! (ଭିତରକୁ ଗ୍ଲଲଗଲେ ।)

ମହେନ୍ଦ୍ର—ଏତେ ଡେରି ହେଲାଣି ମହାପୁରୁ, ସୁମନ୍ତ୍ରକୁ ପାଇବ ତ ?

କପିଳ—ପାଇବେ ମହାଶୟ, ପାଇବେ । ସେ କଥଣ ଭୁଆଡ଼େ ଯାଏ ? ସାହୁକାରଙ୍କ ଘରେ ପଣ୍ଡ ଖାଉଥାଏ, କେତେବେଳେ କେମିତି ବୋଲଟାଏ କି ହାକଟାଏ କରେ ।

ମହେନ୍ଦ୍ର—ବୋଲ-ହାକ କରେ ?

କପିଳ—ହଁ, ସେଇ ତାଙ୍କ ଘରକଥା ବୁହାଶୁହା କରେ ! ତାଙ୍କର ଜୋଇଁ ହବ କି ନା !

ମହେନ୍ଦ୍ର—(ଚମକି) ଜୋଇଁ ହବ ! କିଏ—ସୁମନ୍ତ ? ଚାଲନ୍ତୁ ମହାପୁରୁ ! ମତେ ଟିକିଏ ସାହୁକାରଙ୍କ ଘରଟା ଦେଖେଇଦେବେ ।

କପିଳ—ଆପଣ ବ୍ୟସ୍ତ ହଉଚନ୍ତି କାହିଁକି ? ସ୍ନାହାନ ବଢ଼େଇ ଦଅନ୍ତୁ ।

ମହେନ୍ଦ୍ର—ନା-ନା—ମତେ ଆଉ ଆପଣ ବଳାନ୍ତୁ ନାହିଁ !

କପିଳ—ସ୍ୱା ନା ଗୋଟିଏ କଥା । ଆପଣ ଏମିତି ଅଗାଧୁଆ ଅଖିଆ ଗଲେ-ବାହାର ଖୁଡ଼ୀ ଆଉ ମୋ ମୁଣ୍ଡ ରଖିବ ନାହିଁ !

(ବ୍ରାହ୍ମଣୀ ବାହାର ଆସି ଟିକିଏ ଅନ୍ତରାଳରେ ରହି କହିଲେ—)

ବ୍ରାହ୍ମଣୀ—ହଇରେ କପିଳ ! ସେ ଭଲଲୋକ ପଗ ଗାଧୋଇନାହାନ୍ତି ?

କପିଳ—ଦେଖିଲେ ତ ମହାଶୟ, ଖୁଡ଼ୀର ଆମର ଧର୍ମିଷ୍ଠ ପ୍ରାଣ କି'ନା— ଅତିଥି ଅଭ୍ୟାଗତ ଅଇଲେ ତାଙ୍କୁ ଆଉ ଲେକଶୋଷ ହବନାହିଁ, ଆପଣ ଉଠନ୍ତୁ—ଉଠିଲେ ।

ବ୍ରାହ୍ମଣୀ—ଯାଅ, ଦୁର୍ବେସାକ ନଇରେ ଗାଧୋଇ ଆସିବ, ମୁଁ ପ୍ରସାଦ ରଖିଥିବ, ପାଇବ ।

କପିଳ—ଖୁଡ଼ୀର ମୋର ନଜର ଠାକୁର ଅଛନ୍ତି କି' ନା ! ଖୁଡ଼ୀ, ଭୋଗ ଲଗେଇଲୁଣି ?

ବ୍ରାହ୍ମଣୀ—ନାହିଁ, ଯାଉଚ ପଗ ! (ପ୍ରସ୍ଥାନ)

କପିଳ—ଚାଲନ୍ତୁ ମହାଶୟ, ଉଠନ୍ତୁ !

(କପିଳ ଓ ମହେନ୍ଦ୍ର ରାସ୍ତ ବାହାରକୁ ଚାଲିଗଲେ । କିଛି ସମୟ ପରେ ବ୍ରାହ୍ମଣୀ "ରାଧାବଲ୍ଲଭ ହେ ପାରକର" କହି ଭିତରଆଡ଼ୁ ଆସିଲେ ଓ ପୂର୍ବୋକ୍ତ କୁଟୀର ଭିତରୁ ଖଣ୍ଡିଏ ପିଢ଼ିଲ ଆଳା ନେଇ ପୁଣି

ଭିତରଆଡ଼େ ଫେରିଯାଉଥିଲେ । ଏଇ ସମୟରେ ବାହାରପଟେ ଡାକିଲା ଚମ୍ପୀ—)

ଚମ୍ପୀ—ନାନୀ ଅଛ କି ? ବ୍ରାହ୍ମଣୀ ନାନୀ !!

ବ୍ରାହ୍ମଣୀ—ରାଧାବଲ୍ଲଭ ହେ ପାରକର !

(ଚମ୍ପୀର ପ୍ରବେଶ—ତା ହାତରେ ଗୋଟିଏ ବଡ଼ ପିତ୍ତଳ ଥାଳି, ସେଥିରେ ଗୁଡ଼ାଏ ପାଚିଲା କଦଳୀ, ଆଉ ଗୋଟିଏ ଫୁଲଗୁଚ୍ଛରେ ଗୁଡ଼ାଏ ଟଟକା ଫୁଲ ।)

ଚମ୍ପୀ—ନିଅ ଗୋ ନାନୀ ! ଏଇ ଫୁଲ ଆଉ ଏଇ କଦଳୀ ବଡ଼ମା' ଦେଲେ—ତମ ଠାକୁରଙ୍କଠି ଭୋଗ ଲଗେଇଦବ !

ବ୍ରାହ୍ମଣୀ—ସେ ପାଚିଲା କଦଳୀ ତ ମୋ ଘରେ କାନ୍ଧ କାନ୍ଧ ହୋଇ ଝୁଲୁଚି ! ହେଲେ—କିଏ ଖାଉଚି ? ଖଣ୍ଡୀ, ପୁରୁଷ ହ'ଟା ଲୋକ ନା !!

ଚମ୍ପୀ—ହଉ ତେବେ ତମ କଦଳୀରୁ ଦପୁଷ୍ଟା ଭୋଗ ଲଗେଇଦେବ । ମୁଁ ଏଯାକୁ ଫେରେଇନେଉଚି !

ବ୍ରାହ୍ମଣୀ—(ହଠାତ୍ ସ୍ୱର ବଦଳେଇ) ନା-ନା, ଫେରେଇ ନେଲେ ବଡ଼ବୋହୂ ମନଦୁଃଖ କରିବ ! ଦେ ।

(ଚଞ୍ଚଳ ଚମ୍ପୀ ହାତରୁ ଥାଳିଟା ନେଇଗଲେ ।)

ଚମ୍ପୀ—ସେ କଥା ଯା' କହିଲ ସତ ! ଘିଅ-ଦୁଧଠୁଁ ଗୁହାଳ-ପଶିବାଯାଏ ଖାଲି ବଡ଼ମା' ମନଦୁଃଖ କରିବେ ବୋଲି ସିନା ନିତ ନେଇ ଆସ—ନଇଲେ ତମର କୋଉ ନଅଟ ଅଛି !! ହଇ ଗୋ ନାନୀ, ଆଜି କାହିଁକି ଆମ ଆଡ଼େ ଯାଇ ନା ? ଆଜି କିଛି ଆଣିବ ନାହିଁ କି ?

ବ୍ରାହ୍ମଣୀ—ଖୁବ ବଢ଼ି ବଢ଼ି କଥା କହୁଚୁ ଲୋ ?

ଚମ୍ପୀ—ନାହିଁ ମ ! ମୁଁ ଭାବିଲି କି—ବଡ଼ମା' କାଳେ ଫେର୍ ମନଦୁଃଖ କରିବେ !

ବ୍ରାହ୍ମଣୀ—ଦୂର୍ ହ !

ଚମ୍ପୀ—ହଉ ହଉ ମୁଁ ଯାଉଚି—ତମେ ଯିବ !

ବ୍ରାହ୍ମଣୀ—(ଘର ଆଡ଼େ ଫେରି ଯାଉ ଯାଉ) ରାଧାବଲ୍ଲଭ ହେ···
ଚମ୍ପୀ—(ଅଧାରେ କହୁଥିବା ପଦ ବାକିଟା ପୂରଣ କରିଦେଇ) ପାରିକର !
ବ୍ରାହ୍ମଣୀ—ଦୂର୍ ହ ।

(କଟମଟ କରି ଚାହିଁରହିଲେ ଚମ୍ପୀ ଆଡ଼େ । ଚମ୍ପୀ ହସି ହସି ଚାଲିଗଲା ।)

## ଦ୍ୱିତୀୟ ଦୃଶ୍ୟ

[ ବସନ୍ତପୁର ଗାଁ-ଦାଣ୍ଡ—ଜଣେ ବୈଷ୍ଣବୀ କୀର୍ତ୍ତନ ଗାଇ ଗାଇ ଚାଲିଗଲେ ସେ ବାଟେ । ]

ସାଜ ସାଜ ଗୋ ବ୍ରଜ-କୁଳ-ରାଣୀ !
ଅନ୍ତରଭରି ଶୁଣ ଗୋ ଶ୍ୟାମ-ସୁନ୍ଦର-ବେଣୁ ବାଜିଲାଣି ।
ଆଉ କଅଣ ହେଇଚି—
ନୀଳପଦ୍ମ ବନେ କେତକୀ-ହାସ
ସମୀରେ ଭାସେ ଶ୍ରୀଅଙ୍ଗ-ବାସ,
ନୃତ୍ୟରତ କେକା କାନନ-କୁଞ୍ଜେ
କଦମ୍ବ-କେଶରେ ଅଳି-ବିଳାସ;
ତେବେ—
ଧରି କରେ ସେବା-ଚନ୍ଦନ
ଭଜ ଆଗେ ଗୋପ-ନନ୍ଦନ
ନାହିଁ ଭବ-ବନ୍ଧନ,
ପଥେ ପଥେ ଶ୍ୟାମ-ପ୍ରୀତିଶତଦଳ ପଦ ଛୁଇଁ ଫୁଟିଲାଣି,
(ଏବେ) ଏ ଚନ୍ଦ୍ର-ଆସନେ ଚନ୍ଦ୍ର-ବନୋଦଆ ରାଜିଲାଣି ॥

(ମଣିଭଦ୍ର ସେବାଟେ କୁଆଡ଼େ ଯାଉଥିଲା—ବୈଷ୍ଣବୀ ଗାଉଥିବାର ଦେଖି ଛିଡ଼ାହୋଇ ଶୁଣିବାକୁ ଲାଗିଲା । ବୈଷ୍ଣବୀ ଗୀତ ଗାଇ ଗାଇ ଚାଲିଗଲା —ଏଇ ସମୟରେ ନାଲୁ ମିଶ୍ର ସେ ବାଟ ଦେଇ ଯାଉଥିଲେ— ମଣିଭଦ୍ର ତାଙ୍କୁ ଦେଖିପାରି କହିଲା—)

ମଣି—କଏ ମିଶ୍ରେ ଆପଣେ କି ? କଣ ସାହୁକାରଙ୍କ ଘରଆଡ଼େ ବାହାରିଲେ ?

ନାଲୁ—(ଛୁଡ଼ା ହୋଇପଡ଼ି) ଯୁଆଡ଼େ ବାହାରିଲେ ତୋର କଅଣ ?

ମଣି—ନାଇଁ, ସେମିତି ପଚ୍ଚରୁଥିଲି ନା ! ତମେ ଏମିତ ଡାଚଘାଅ କାହିଁକି କହୁଲ ?

ନାଲୁ—ଡାଚଲି କି ଅଣ୍ଡା ହେଲି ତୋର କ'ଣ—ହଇରେ ?

ମଣି—ଏସ୍ତା ତ କହୁବ ! ଏକା ଗାଆଁ, ଏକା ସାଇରେ ଘର କରି ଏମିତ କଅଣ କେହୁ ପଚ୍ଚରୁ ନାଇଁ ?

ନାଲୁ—କଅଣ ପଚ୍ଚରୁଚ ?

ମଣି—କଅଣ ପଚ୍ଚରୁଚ କି—ବାହାଘରଟା କେବେ ହଉଚ ?

ନାଲୁ—ବାହାଘର ?

ମଣି—ଏଇ, ତଅପୋଇ ସାଙ୍ଗରେ ସେ ଟୋକାର ?

ନାଲୁ—ସେଥିରୁ ତତେ କଣ ମିଳିବ ?

ମଣି—କଅଣ ମିଳିବ ? ହଇ ହେ, ଗାଁ ଭିତରେ ଏଡ଼େ ବଡ଼ ବାହାଘର ହବ—ତେମେମାନେ ପିନା ସବୁ ଆଉ କଅଣ କଅଣ ପାଇବ—ହେଲେ ଆମ ତୁଣ୍ଡରେ ଖିରପିଠା ଟିକଏ ବାଜିବ ତ ! ଆଚ୍ଛା, ମିଶ୍ରେ ଆପଣେ, ତେମେ ଏକା ସତ କଥା କହୁବ—ସେ ଟୋକା କୁଆଡ଼େ ବାହା ହବାକୁ ମଙ୍ଗୁ ନାଇଁ ?

ନାଲୁ—ସେ ମଙ୍ଗୁ ନାଇଁ ଏ କଥାଟା ତତେ କେମିତ ଖବର ହେଲା ?

ମଣି—ହବ ନାଇଁ ? କପିଳ ମହାପା···ଏଁ, ନା, ମୁଁ ଏମିତ କୋଉଠୁ ଶୁଣିଲି ।

ନାଲୁ—ତେବେ କପିଳାର ଏ କାଣ୍ଡ—ନା ?

ମଣି—ସେ ଯାହା କାଣ୍ଡ ହଉ, ସେ ଟୋକାଟାକୁ ଆମ ତଅପୋଇ !! ଯେଇଟାର କୁଆଡ଼େ ଜାତି-ପତି ଠିକଣା ନାଇଁ—ଘରଦ୍ୱାର କିଛି ନାଇଁ । ସେଇଟାକୁ ଆଣି ଘରେ ପୂରେଇ—ହେଲେ, ଏସବୁ ଆମ ପାଟକଭୁଲକୁ ନନ୍ଦା ! ନାଇଁ, ତେମେ କହୁଲ—ତେମେ ତ ବ୍ରାହ୍ମଣ—ହଚଜାତି—ତେମେ କହୁଲ, ଏଇଟା କୋଉ ହୁସାବ କଥା ?

ନାଲୁ—ଯା—ଯା, ତୋ କାମରେ ତୁ ଯା, ତୋର ଏତେ କଥାରେ ବଣ୍‌ କଅଣ ?

ମଣି—ହଉ ହଉ, ମୋର 'ବଣ୍‌' କ 'ଉତ୍ତେଇଣ' ବଲେ ବୁଝିବ ଯେ ! ମୁଁ ବୋଲ୍‌ ପିନା ଧମକେଇ ଦଉଚ ! ବୁଝିଲେ ମିଶ୍ରେ ଆପଣେ, ଗାଁ-ଯାକ ସଭେଁ ମେଲ ହେଲେଣି—ନ୍ୟାସୁନଶାପ ହବ ! ସାହୁକାର-ଘର ବୋଲ୍‌ ଗାଁଯାକ ତ ଆଉ ଡଣସିବେ ନାହିଁ !!

ନାଲୁ—ମଣିଆ, ଖୁବ୍‌ କହୁଲୁଣି—ମାନେ ମାନେ ଏଠୁ ପଲା ! କହୁଲୁ—ନଶାପ କଶବେ ଗାଁଲୋକ ! ହଇରେ, କ ନଶାପ କଶବେ ? କଅଣ ସାହୁକାର-ଘର କାହାର ଖାଇଯାଇଛନ୍ତି ନା ବୁଡ଼େଇ ଦେଇଚନ୍ତି ?

ମଣି—ମିଶ୍ରେ ଆପଣେ ! ପଡରଚଣ୍ଟାଗିଣ ଗୁଡ଼ ।

ନାଲୁ—କଅଣ କହୁଲୁ ? ହଇରେ—କଅଣ କହୁଲୁ ? ଦେବ ଯେ ପୁଚ୍ଛେ ଥୋଇ ଏଇଲେ !

ମଣି—ଆହେ କଥା ତ ପଡ଼ୁଚ—ଥୁଆଥୋଇ କଅଣ ହେ ?

ନାଲୁ—କାହାକୁ କହୁଲୁ ପଡରଚଣ୍ଟା ?

ମଣି—ମୁଁ ମୋର ଯାହାକୁ କହୁଲ—ତମ ନାଁ ଧଶଚ ? ଅଢ ଗୁରେ ସିଆଣିଆ ଦେଖେଇ ହଉଚ ?

ନାଲୁ—ମଣିଆ ! ତୋ ଶଙ୍ଖି, ଶଙ୍ଖି ଚପିଦେବ, ଜାଣିଚୁ ନା ! କହ, କାହାକୁ କହୁଲୁ ପଡରଚଣ୍ଟା ?

ମଣି—ମୁଁ କହୁନାହିଁ ହେ ! ଆଢ ଗୁରେ ସିଆଣିଆ ଦେଖେଇ ହଉଚନ୍ତି !

ନାଲୁ—ମଣିଆ ! (ଆକ୍ରମଣ କଶ) ବତା—ବତା କାହାକୁ କହୁଲୁ ?

ମଣି—(ନଜକୁ ମୁକ୍ତ କଶବାକୁ ପ୍ରବଳ ଚେଷ୍ଟାକଲ) ଓଃ, ଆହେ କ କଥା ଏ ? ଅଢ ଗୁରେ ସିଆଣିଆ ଦେଖେଇ ହଉଚ ।

(ନାଲୁ ମିଶ୍ରେ ମଣିଭଦ୍ରକୁ ଧଶ ଘୋଷାଶ ଆଣିଲାବେଳେ ସେ ବକଟ ଚକ୍ରାର କଲ ।)

ମଣି—ମାଶପକାଇଲ—ମାଶପକାଇଲ !!

(ଏହି ସମୟରେ ଦାସ ମହାରଣା ପ୍ରବେଶ କଲେ । )

ଦାସ—ହୁଁ । ହୁଁ ।—ଏ କଅଣ ! ଏ କଅଣ ! ପିଲ୍ ଦ'ଟା ତମେ ।

(ବହୁ କଷ୍ଟରେ ଦାସ ମହାରଣା ଦୁହିଁଙ୍କୁ ଛଡ଼ାଛଡ଼ି କରିଦେଲେ ।)

ମଣି—ହଉ, ହଉ, ରହିଥା ! ଥଉ ଗୁରେ ସିଆଣିଆ ଦେଖେଇ ହଉଚନ୍ତି । (ପ୍ରସ୍ଥାନ)

ଦାସ—(ଗୁହିଁ) ଆରେ, ନାଲୁ ମିଶ୍ରେ ନା ତେମେ ? ତମକୁ ତ କେତେ ଥର ଆମ ସାହୁକାରଙ୍କ ଘରେ ଦେଖିଚ !

ନାଲୁ—ସେଇ ସାହୁକାରଙ୍କ ଘରେ ଦେଖିଚ ବୋଲି ତ ଏତେ କଥା ! ଏ ଛତରଙ୍କ ଡହରେ ଯାଉନାହିଁ ।

ଦାସ—ଡହରେ ଯାଉନାହିଁ !! କଅଣ ମୁଁ କିଛୁ ବୁଝିପାରୁନାହିଁ ତମ କଥା ।

ନାଲୁ—ବୁଝିବ କେମିତି ! ତେମେ ତ ଏ ଗାଁର ଲୋକ ନୁହଁ—ଏ ଗାଁ-ଖଣ୍ଡିକର ଖବର ବୁଝିବ କେଉଁଠୁ ? କେଇଟା ମାଗିଖିଆ ଛତର ମିଳି ଏ ଗାଁ ଖଣ୍ଡିକର ମହତ ବୁଡ଼େଇଲେ ।

ଦାସ—କଅଣ କରୁଚନ୍ତି ସେ ?

ନାଲୁ—ଆହେ କଅଣ ଶୁଣିବ ସେ ସବୁ ! ମୁମନ୍ତ ଆସି ସାହୁକାରଙ୍କ ଘରେ ରହିଲ ଦିନୁ ଏଗୁଡ଼ାଙ୍କର ଆଉ ଖିଆପିଆ, ନିଦ ନାହିଁ । ବାର ଅପବାଦ, ବାର ନିନ୍ଦା । ବାବା, ଏଗୁଡ଼ାଙ୍କୁ ସାଧ କରିବାକୁ ମତେ ବେଶି ବେଳ ଲାଗିବ ନାହିଁ ! ହଁ, ଛାଡ଼ ସେକଥା । ତେମେ କେତେବେଳୁ ?

ଦାସ—ମୁଁ ଏଇ ସକାଳେ ତ ଆସିଥିଲି—ଏଇନେ ଯାଉଚି ଫେରି ।

ନାଲୁ—ଅଚ୍ଛା ମହାରଣାଏ, ଗୋଟାଏ କଥା ପଚାରିବି । ଆମେ ଶୁଣୁଚୁ—ଏଇ ଦିନାକେତେ ହବ କୁଆଡ଼େ ପାଣିବୁଡ଼ା ଚୋରଗୁଡ଼ାକ—ଯାହାଙ୍କୁ ଗମେଣ୍ଟ ବୋଲି କହନ୍ତି ହେ—ସେଗୁଡ଼ାକ ଭାରି ମାଡୁଚନ୍ତି ଆମର ଏପଟେ !

ଦାସ—ଏପଟେ ତାଙ୍କର ବେଶି କରମତ ନାହିଁ । ତେବେ ଏଇ ଦିନାକେତେ ହବ ଫିରିଙ୍ଗି 'ଗମେଣ୍ଟ'ମାନେ ଆସି ଆମ ବନ୍ଦର ଆଉ ମୁହାଣ-ମାନଙ୍କରେ ବେଳେବେଳେ ଚଢ଼ଉ କରି ବୋଇତ ସବୁ ଲୁଟିନଉଚନ୍ତି ।

ସେଥିପାଇଁ ଆମକୁ ପରା ଟିକିଏ ଡାକ୍ତରଙ୍କରେ ରହିବାକୁ ପଡ଼ୁଛି । ହଉ ମୁଁ ଯାଏ । ମିଶ୍ରେ, ଆସିଥିଲି ଟିକିଏ ଝିଅଟାକୁ ସଙ୍ଖୋଳ ଦିବାକୁ; କୁଳ ହେଉଣକା ବୋଇତ ମେଲା ଗଲାଦିନୁ ତାକୁ ଆଉ ଦେଖି ନଥିଲି ।

ନାଲୁ—ତେମେ ତ ଏଣେ ଆସିନା ଆଉ !

ଦାସ—କାମର ଯେମିତ ଭିଡ଼—ଜାଣିନା ମିଶ୍ରେ ?

ନାଲୁ—ଦେଖିଲ ତଅପୋଇକି ?

ଦାସ—ହଁ ଦେଖିଲି; ଭଲରେ ଚଳୁଛି । ସାଉକାର ତ ମୁଣ୍ଡରେ ମୁଣ୍ଡେଇଚନ୍ତି ! ତାକୁ କୋଉ କଥା ଖୋଜିବାକୁ ଚାହିଁବାକୁ ନାହିଁ—ଭଲ, ସବୁ ଭଲ !

ନାଲୁ—ବାକି, ସାଇମାନଙ୍କୁ ସବୁବେଳେ ଝୁରୁଛି !

ଦାସ—ଝୁରିବ ନାହିଁ—ରକ୍ତର ଟାଣ ପରା !

ନାଲୁ—ଅଚ୍ଛା ମହାରଣାଏ ! ସାଉକାରମାନେ ବୋଇତ ମେଲିବାର ଅଳକ ମାସ ଛଅଟା ହବ, ନାହିଁ ?

ଦାସ—ହଁ, ତା ହବ !

ନାଲୁ—ଏଇଲେ କୋଉଠି ଥିବେ ?

ଦାସ—କେମିତି ଜାଣିବା ! ହେଲେ, ପବନର ଗତି ଯାହା ଜଣାପଡୁଛି—ଲଙ୍କା ଛୁଡ଼ିବେଣି ।

ନାଲୁ—ସ୍ଥା ପରେ କୋଉଠିକି ଯାଇଥିବେ ?

ଦାସ—କହୁ ତ ଥିଲେ ଯବ, ବଳି ଏସବୁ ଜାଗାକୁ ଯିବେ ବୋଲି—ଯାଇଥିବେ । ହଉ, ମୁଁ ଆସେ ମିଶ୍ରେ । ଖରା ଉଠିଯାଉଛି ।

(ଦୁହେଁ ଦୁଇଆଡ଼େ ଚାଲିଗଲେ ।)

## ତୃତୀୟ ଦୃଶ୍ୟ

[ସାଧବଘର ବଗିଚାର ଏକ ଅଂଶ—ଗୋଟିଏ ମର୍ମର ବେଦୀ ଉପରେ ବସିଚନ୍ତି ତଅପୋଇ ଆଉ ନୀଳେନ୍ଦ୍ର । ନୀଳେନ୍ଦ୍ର ସାଜିଛି କୃଷ୍ଣ—ତାର ବେଶ ସରିଚି; ବାକି ତଅପୋଇଙ୍କ ବେଶ କରିବାରେ ସାଉକାର ବ୍ୟସ୍ତ—

କଏ ପିନ୍ଧେଇ ଦଉଚ ଘଗ୍ରା—କଏ କୁଣ୍ଡେଇ ଦଉଚ କେଶ—କଏ ବାନ୍ଧି ଦଉଚ ମଥାରେ କସ୍ତୁରୀ—କଏ ଲେଖିଦେଉଚ ପାଦରେ ଅଳତା—କଏ ଆଙ୍କିଦେଉଚ କପାଳରେ ଚନ୍ଦନପାଟୀ—ଆନନ୍ଦ-କଳରବ ଭିତରେ ବେଶ ସରିଲା ।]

ସୁଭଦ୍ରା—ବେଶ ସରିଲା—ଏଥର ଚାଲ ଦହିଁଙ୍କି ଦୋଳାଉପରକୁ ନେଇଯିବା ।

(ରାଧାକୃଷ୍ଣଙ୍କୁ ଧରିନେଇ ଟଙ୍ଗାଥିବା ଦୋଳରେ ବସେଇଲେ ।)

ସୁଭଦ୍ରା—ଆଗୋ, କୃଷ୍ଣ ହାତରେ ତ ବଇଁଶୀ ନାହିଁ ! ଖଣ୍ଡେ ବଇଁଶୀ କଏ ଆଣ ମ' ।

(ଉଜ୍ଜ୍ୱଳା ଘୁନାର ବଂଶୀ ଧରି ଘରଆଡୁ ପ୍ରବେଶ କଲେ ।)

ଉଜ୍ଜ୍ୱଳା—ଆଗୋ ! ରାଧାକୃଷ୍ଣ ଖେଳ ଖେଳୁଚ, ବଇଁଶୀଟା ଛାଡ଼ିଆସିଲ କେମିତ ମ ? ନଅ (ବଇଁଶୀଟା ଦେଲେ; ବିମଳା ନେଇ ନୀଳେନ୍ଦ୍ରକୁ ଧରାଇଦେଲେ ।)

ଉଜ୍ଜ୍ୱଳା—ହେଲେ କୃଷ୍ଣଟା ଟିକଏ ମାଇଚିଆ ହେଇଗଲା !

କମଳା—ଏମିତ ରାଧାକୁ ସିନା !

ବିମଳା—ସେମିତ କୃଷ୍ଣ !

ନୀଳେନ୍ଦ୍ର—କେମିତ ?

ବିମଳା—(ତଅପୋଇ) କହିବ ରାଇ, କହିବ ?

ତଅପୋଇ—ମଲା—କହନ୍ !

ବିମଳା—ସୁମନ୍ତ ପରି କୃଷ୍ଣ !

ତଅପୋଇ—ଚୁପ୍ !

ସୁଭଦ୍ରା—ଆଗୋ, ସୁମନ୍ତକୁ ଟିକଏ ଡାକଆଣ ମ'—ଦେଖି ।

ବିମଳା—ଦେଖିଲେ ମୁଣ୍ଡଟା ବାଡ଼େଇ ପକେଇବ ।

(ସମସ୍ତେ ହସିଉଠିଲେ—ତଅପୋଇ ରୁଷିଲା ଭଳି ଦୋଳରୁ ଓହ୍ଲେଇ ଚାଲିଯାଉଥିଲା ।)

ବିମଳା—ଆଗୋ, ଧର-ଧର—ରାଇ ରୁଷିଗଲେ ।

ସୁଭଦ୍ରା—କହ୍ଲେଇ ! ଯା,ମ —ଧର, ତମ ରାଇ ରୁଷିଗଲେ ଯେ !

( ସମସ୍ତେ ଯାଇ ତଅପୋଇକ ଧରି ଆଣିଲେ—ତଅପୋଇ ହସି ପକାଇଲା । ସମସ୍ତେ ସେ ହସରେ ଯୋଗଦେଲେ । ଏଇ ସମୟରେ "ରାଧାବଲ୍ଲଭ ହେ ପାରକର" କହୁ କହୁ ବୃଦ୍ଧା ବ୍ରାହ୍ମଣୀର ପ୍ରବେଶ । )

ବ୍ରାହ୍ମଣୀ—କଅଣ କରୁଚ ଲୋ ବୋହୂମାନେ, ହସଖୁସିରେ ତ ଘର ଉଛୁଳୁଚ !

ଉଜ୍ଜ୍ୱଳା—ଆସ ବାହ୍ମଣୀ ନାନୀ ! ରାଧାକୃଷ୍ଣ ଦର୍ଶନ କରିବ, ଆସ ।

ବ୍ରାହ୍ମଣୀ—ଏଁ ଦର୍ଶନ ! (ଚାହିଁ) ଆଗୋ ସତେ ତ ! କଅଣ ରାଧାକୃଷ୍ଣ ଦୋଳରେ ଝୁଲୁଛନ୍ତି ?

ଉଜ୍ଜ୍ୱଳା—ହଁ ଖେଳୁଛନ୍ତି ସବୁ । କୋଉ ପ୍ରକାରେ ହେଲେ ତ ତଅପୋଇର ମନଟାକୁ ଭୁଲାଇବାକୁ ହବ—ନ ହେଲେ ସବୁବେଳେ ତ ଖାଇମାନଙ୍କୁ ଝୁରୁଛି !!

ବ୍ରାହ୍ମଣୀ—ହଁ, ନରନ୍ଦ ଯେବେ ଝୁରିବ ଭାଉଜମାନେ ରହି କଅଣ କରିବେ ? ଭଲ ଲୋ ଭଲ । ରାଧା କିଏ ତମର ? (ତଅପୋଇକି ଦେଖି) ବାଃ, ଭଲ ସାଜିଚ ଝିଅ—(ମାଲେଦ୍ଧକୁ ଦେଖି) ହଇଲୋ ଏ ସାନବୋଉ ଏବେ କୃଷ୍ଣ ସାଜିଚ !! ମୁଁ ଭାବିଥିଲି ଆଉ କିଏ ହୋଇଥିବ ପରା !

ସୁଭଦ୍ରା—ସାନବୋଉ ତ ତା ସାଥୀ; ଆଉ କିଏ ହୁଅନ୍ତା ?

ବ୍ରାହ୍ମଣୀ—ନାଇଁ, ମୁଁ ଭାବିଥିଲି ସେଇ ଟୋକା ଅବା···

ବିମଳା—କୋଉ ଟୋକା ନାନୀ ?

ବ୍ରାହ୍ମଣୀ—ମେଳ ମ, ସେଇ—ଯାହାକୁ ତମ ଦେଢ଼ଶୁରେ କାହୁଁ ଧରି ଆଣିଥିଲେ—ଯାହାକୁ ନରନ୍ଦେଇ କରିବେ ବୋଲି···

(ଉଜ୍ଜ୍ୱଳାଙ୍କୁ ଏ କଥା ଭଲ ଲାଗିଲା ନାହିଁ, ସେ ବାଧାଦେଇ କହିଲେ)

ଉଜ୍ଜ୍ୱଳା—ସୁମନ କଥା କହୁଚ କି ନାନୀ ! ନା, ସେ କାହିଁକି ସାଜନ୍ତା ?

ସୁଭଦ୍ରା—ଆମ ଭିତରେ ଆମେ ଖେଳୁଚୁ ନା !!

(ଏଇସବୁ କଥା ଭିତରେ ମାଲେଦ୍ଧ ଉଠିଯାଇ ବେଦୀ ଉପରେ ବସିପଡ଼ିଲାଣି ମନମାରି । ତଅପୋଇ ନିଜ ମନକୁ ମନ ଦୋଳରେ ଝୁଲୁଥାଏ । ଉଜ୍ଜ୍ୱଳା ପ୍ରସଙ୍ଗ ବଦଳେଇ ଦେଲେ ।)

ହକ୍କୁଲା—ତେମେ କୁଆଡ଼େ ବାହାରିଲ ମ ନାନୀ ?

ବ୍ରାହ୍ମଣୀ—ନାଇଁ, ଆଜ ମଙ୍ଗଳବାରଟା, ମାଆ ମଙ୍ଗଳାଙ୍କ ଦର୍ଶନକୁ ବାହାରିଚି । ବାଟରେ ଟିକଏ ତମମାନଙ୍କୁ ଦେଖିଯିବି—ସେଥିପାଇଁ ଏଣେ ପଶିଆସିଲି । ତେମେ ସବୁ କେନ୍ତେ ଯିବନାଇଁ କ ?

ହକ୍କୁଲା—ହଁ, ଯିବା ଯେ, ଏଣେ ତ ରହିଯାଇଚୁ !

ସୁଭଦ୍ରା—ସୁଲ ତା'ହେଲେ ସଭିଏଁ ଯିବା—ଆଲେ ତଅପୋଇ !

ତଅପୋଇ—ନୂଆ ଭାଉଜ ! ଆ ଯିବା !

(ମାଲେହ ପାଖକୁ ଗଲେ)

ମାଲେହ—ମୋ ମୁଣ୍ଡଟା କଅଣ ହଉଚୁ, ତେମେ ସବୁ ଯା ।

ତଅପୋଇ—ତା'ହେଲେ ମୁଁ ଯିବିନାଇଁ ।

ହକ୍କୁଲା—ହଉ, ତାହେଲେ ତେମେ ଦହେଁ ଥା, ପଛକେ ଯିବ—ଅମର ଯିବା ଆସ ଲେ ! (ଯାଉ ଯାଉ ଫେରି) ସାନବୋଉ, ଆମର ଫେରୁ ଫେରୁ କାଲେ ଡେରି ହବ—ଠାକୁର-ଘରକୁ ନୈବେଦ୍ୟ ସଜାଡ଼ି ପଠେଇ ଦେଇଥିବୁ । ଆସ ବ୍ରାହ୍ମଣୀ ନାନ !

ବ୍ରାହ୍ମଣୀ—ରାଧାବଲ୍ଲଭ ହେ, ପାରକର !

(ବଧବା ବ୍ରାହ୍ମଣୀ ଓ ଛ' ବୋହୂଙ୍କର ପ୍ରସ୍ଥାନ)

ତଅପୋଇ—ନୂଆଭାଉଜ ! ସତରେ ତୋର ମୁଣ୍ଡ ବନ୍ଧୁଚି ? ଦେଖା, ମୁଁ ଚିପିଦିଏ ।

ମାଲେହ—ନା, ଥାଉ ।

ତଅପୋଇ—ହୁଁ—ଜଣାଗଲା ଯେ ! ମୋ ଆଗରେ କଥା ଲୁଚେଇ ଗୋଟାଏ ବାହାନା । ସାନଭାଇ ମନେପଡ଼ୁଚି କି ଲେ ? (ମାଲେହକୁ ନୀରବ ଦେଖି) ହୁଁ—ମୁଁ ଜାଣେ ଯେ ।

ମାଲେହ—କଅଣ ଜାଣୁ ?

ତଅପୋଇ—ମୋ ଆଗରେ କଥା ଲୁଚଉଚୁ ।

ମାଲେହ—ମୁଁ ଲୁଚଉଚି ନାଇଁ ଯେ, ତୁ ଲୁଚଉଚୁ ମୋ ଆଗରେ ।

ତଅପୋଇ —ମୁଁ ? ମୁଁ କଅଣ ଲୁଚେଇଲି ଲେ ? କୋଉ କଥା ?

ନୀଳେନ୍ଦ୍ର  କେଜାଣି ମନକୁ ପଶୁର !

ଚଅପୋଇ—(ହଠାତ୍ ଗମ୍ଭୀର ହୋଇ) ହୁଁ ...

ନୀଳେନ୍ଦ୍ର—ମନେପଡ଼ିଲା ?

ଚଅପୋଇ—(ନୀରବ)

ନୀଳେନ୍ଦ୍ର—କି ଲୋ, ମୁହଁ ଶୁଖେଇଦେଲୁ ଯେ ?

ଚଅପୋଇ—ନୂଆଝିଅଜ ! ସପନ ତ ସଭିଏଁ ଦେଖନ୍ତି, ସବୁ ସପନ କଅଣ ସତ ହୁଏ ?

ନୀଳେନ୍ଦ୍ର—ନା, ବାଙ୍କା ତୋର ଝିଇମାନେ ତ ସପନ ଦେଖିନାହାନ୍ତି ?

ଚଅପୋଇ—ଝିଇମାନଙ୍କ କଥା କହୁନାହିଁ—କହୁଚ ମୋ କଥା । ମୋ କଥାର ତ ଉତ୍ତର ପାଇଲି ନାହିଁ ନୂଆଝିଅଜ ?

ନୀଳେନ୍ଦ୍ର—ତୁ କଅଣ ତାକୁ କିଛୁ ପଶୁରଥିଲୁ ?

ଚଅପୋଇ—ନା ।

ନୀଳେନ୍ଦ୍ର—ଆଉ କହୁଚୁ—ଉତ୍ତର ପାଇଲୁ ନାହିଁ ବୋଲି ?

ଚଅପୋଇ—ଯୋଉ କଥା ନ ପଗ୍ଗୁଣ ବି ପଚରାଯାଏ—ଯାହାର ଉତ୍ତର ଖାଲି କଥାରେ ମିଳେ ନାହିଁ ।

ନୀଳେନ୍ଦ୍ର—ତୋ ମୁଣ୍ଡ ଖରାପ ହେଇଗଲାଣି କଲେ ? କଅଣ ସବୁ କହୁଚୁ ?

ଚଅପୋଇ—କହୁଚ ସବୁ ମିଛ, ସବୁ ସ୍ୱପ୍ନ, ସବୁ ଧୂଆଁ !!

ନୀଳେନ୍ଦ୍ର—ତେବେ କଅଣ—ଝିଇମାନେ ତୋର ଭୁଲ୍ କଲେ ?

ଚଅପୋଇ—ଭୁଲ୍ ସେମାନଙ୍କର କାହିଁକି ହବ—ଭୁଲ୍ ମୋ ଭାଗ୍ୟର ।

ନୀଳେନ୍ଦ୍ର—ଏତେ ଚଞ୍ଚଳ ଭାଗ୍ୟକୁ ଦୋଷି ଆଶା ଛାଡ଼ିଦଉଚୁ । ଝିଇମାନେ ବାହୁଡ଼ନ୍ତୁ ।

ଚଅପୋଇ—ଝିଇମାନେ ବାହୁଡ଼ିଲେ ମନ କଅଣ ଆଉ ବାହୁଡ଼ିବ ?

ନୀଳେନ୍ଦ୍ର—ଛୁଆଭଉଣୀ, ମନକୁ ଚଞ୍ଚଳ କଲେ ନଜେ ଦୁଃଖ ପାଇବୁ ।

ଚଅପୋଇ—ମୋ ମନକଥା ମୁଁ କହୁନାହିଁ । (ଅଧୀର ହୋଇ) କେତେ ଯୁଦ୍ଧ କରିବି—ଗଡ଼ଦୁଆର ତ ଖୋଲିଲା ନାହିଁ—ନୂଆଝିଅଜ !

ମାଳେନ୍ଦ୍ର—ଖୋଲିବ, ଖୋଲିବ ଲୋ କୁଆଁଭଉଣି, ଝରଣିସ୍ବଚ୍ଛ କାଠ ଲୁହାର ଦୁଆର—ଚଞ୍ଚଳ ହେଲେ ତ ଚଳିବ ନାହିଁ ।

ତଅପୋଇ—ଚଞ୍ଚଳ ନ ହେଲେ ଚହଲ ଯେ ହେଧିହେବନାହିଁ ।

ମାଳେନ୍ଦ୍ର—(ଭୃକୁଟି କରି ପାଖ) ଚହଲ ?

ତଅପୋଇ—ବ୍ରାହ୍ମଣୀ-କାମ ମୁହଁରେ କଅଣ ବାଡ଼-ବତା ଦେବୁ ?

ମାଳେନ୍ଦ୍ର—ସେଇଟା ସେମିତ କହି କଅଣ କରିବ ? ତା କଥା ମୁଁ ଜାଣେ ।

ତଅପୋଇ—ଅନ୍ଧ ଯାହା କଥା ରୁ ନଜାଣୁ—ସେମାନେ କହିବେ ? ଯାଇ-ପଡ଼ଶା, ଗାଁ-ଲୋକେ !

ମାଳେନ୍ଦ୍ର—ଯାଇ-ପଡ଼ଶା, ଗାଁଲୋକ—ରୁ ଏତେ କଥା ଭାଇଙ୍କୁ କାହିଁକି କହିଲୁ ?

ତଅପୋଇ—(ମ୍ଳାନ ହସ ହସି) ଆଉ ଭାବିବାକୁ କିଛୁ ନାହିଁ ବୋଲି ।

ମାଳେନ୍ଦ୍ର—ଭାବିବା ତ ଦରକାର ନାହିଁ, କୁଆଁଭଉଣି ! ମୁଁ କହୁଚି ତୋର ଭାଇମାନଙ୍କର ସପନ ସତ ହେବ ।

ତଅପୋଇ—(ମନଟା ଟିକିଏ ତରଳ ହୋଇ ଆସିଲା ପରି) ଦୁନିଆ ଓଲଟିବ ?

ମାଳେନ୍ଦ୍ର—ହଁ, ଦୁନିଆ ବ ବେଳେ ବେଳେ ଓଲଟେ; ଓଲଟିବ । ସେ ସବୁ କଥା ମତେ ଲାଗେ—ରୁ କାହିଁକି ଭାବୁଚୁ ? ରୁ ଥା କ—ମୁଁ ନୈବେଦ୍ୟ ସଜାଡ଼ି ଠାକୁରଘରକୁ ପଠେଇ ଦେଇ ଆସୁଚି ଏଇନେ । (ପ୍ରସ୍ଥାନ) (ମାଳେନ୍ଦ୍ରଠୁ ଆଶାର ବାଣୀ ଶୁଣି ତଅପୋଇର ମନଟା ଟିକିଏ ତରଳ ହୋଇ ଆସିଚି । ସେ କିଛି ସମୟ ଦୋଳିରେ ଯାଇ ବସି ଝୁଲିଲା—ତାପରେ ଉଠିଆସି ବେଢ ଉପରେ ବସି ଗୀତଟିଏ ଗାଇଲା । ଦାସୀ ଚମ୍ପୀ କେତେବେଳୁ ଆସି ଟିକିଏ ଦୂରରେ ଛିଡ଼ାହୋଇ ଗୀତଟି ଶୁଣୁଚି । ଗୀତ ବୋଲି ସାରି ଫେରପଡ଼ିଲାବେଳକୁ ତଅପୋଇ ଦେଖିଲା କିଏ ଜଣେ ଛିଡ଼ାହେଇଚି—ହଠାତ୍ ଚମ୍ପୀ ବୋଲି ବାରିପାରିଲା ନାହିଁ । ଚମକିପଡ଼ି କହିଲା—କିଏ ?)

ଚମ୍ପୀ—ଚମକିପଡ଼ିଲ କ ଦେଇ; ମୁଁ ପରା ।

ଡଅପୋଇ—ଚମ୍ପୀ !

ଚମ୍ପୀ—ମୁଁ କେତେବେଳୁ ଆସି ଛୁଡ଼ାହୋଇ ତମ ଗୀତ ଶୁଣୁଚ—ତମର ଲକ୍ଷ୍ୟ ନାହିଁ । ସତେ ଦେଇ, ତମେ ଗୀତ ଗାଉଚ—ଯେମିତ ବଗିଚ୍ଚ ଭିତରେ କୋଉଠି କୋଇଲି ବୋବାଇଲା ପରି ଲାଗୁଚ । ଆଗୋ ଦେଇ, ସୁମନ୍ତ ସାଆନ୍ତେ ଆସିନାହାନ୍ତି କି ?

ଡଅପୋଇ—(ଖତେଇହେଲା ପରି) କା-ହିଁ-କି ? ପୋଡ଼ାମୁହିଁ !

ଚମ୍ପୀ—(ମନକୁ ମନ କହିଲା) ଆଣ୍ଠୁକୁଡ଼ୀ ଛତରଖାଇକୁ ଦେଖିଲେ ମୋର ହାଡ଼ ଜଳେ । ପୋଡ଼ାମୁହିଁ—ଫେର୍ ମାଡ଼ା ସାଜଚ—ଢଳକପିଠଚ !! ଦୁଆର ମନା କରିଦିଅନ୍ତି ଯେ—ଖାଲି ବଡ଼ମାଆଙ୍କ ଡର ମାଡ଼ୁଚ ।

ଡଅପୋଇ—କିଏ, ବ୍ରାହ୍ମଣୀ-ନାନୀ କି ଲୋ ?

ଚମ୍ପୀ—ହଁ'ଗୋ, ସେଇ ସବାଖାଇ ! ହଇ ଗୋ ଦେଇ, ତାଙ୍କୁ ତମେ କଅଣ କହିଲ କି ?

ଡଅପୋଇ—ତାଙ୍କୁ ? ନାହିଁ ତ—କାହିଁକି ?

ଚମ୍ପୀ—ଛତରଖାଇର କେଡ଼େ ଗରବ !!

ଡଅପୋଇ—ଆଲୋ, କଅଣ କଲା ସେ ? ମିଛଟାରେ ତାକୁ କାଟୁଚୁ ସମ୍ପୁଚୁ କାହିଁକି ?

ଚମ୍ପୀ—ମିଛରେ କଅଣ କାଟୁଚ ସମ୍ପୁଚ ? ଆଗୋ, ଏଇନେ ଯେତେବେଳେ ମା'ମାନେ ସଭିଏଁ ମିଳି ମଙ୍ଗଳା-ଦର୍ଶନକୁ ଗଲେ ନାହିଁ—ମୁଁ ତମ ଶୋଇଲା ଘରେ ପଲଙ୍କ ଝାଡ଼ୁଥିଲି । ସେ ଜାଣେନାହିଁ ମୁଁ ତା ଭିତରେ ଅଛି ବୋଲି । ଆଗୋ, ଯାଉ ଯାଉ ମହିଅଣୀ ମାଆଙ୍କୁ କହୁଚ, "ଅଭିଆଡ଼ୀ ଝିଅଟା—ଜାତ ନାହିଁ ପତ ନାହିଁ, ଗୋଟାଏ କାହୁଁ ଧରିଆଣିଲା ଟୋକାଟା ସାଙ୍ଗରେ ସଦାବେଳେ ହେଁ-ହେଁ-ଫେଁ-ଫେଁ ହଉଚ ।" ଆଗୋ, ମୋ ଦେଇ, ଫେର୍ ହେଁ-ହେଁ-ଫେଁ-ଫେଁ ହେବ ? ମୋ ଜୋଇଁସାଆନ୍ତେ ଫେର୍ କାହୁଁ ଧରିଆଣିଲା ପିଲା ? (ଏସବୁ ଶୁଣି ଡଅପୋଇର ଅନ୍ତର ଭିତରେ ଝଡ଼ ବହିଲା—ସେ ନିଜକୁ ସମ୍ଭାଳି ପାରିଲା ନାହିଁ । )

ତଅପୋଇ—ଚମ୍ପୀ !!

( ଏ ଡାକରେ ଚମ୍ପୀର କଥାର ସୁଅ ବନ୍ଦ ହେଲା । ସେ ଚମକିପଡ଼ି ତଅପୋଇକି ଚାହିଁଲା । )

ଚମ୍ପୀ—କଅଣ ଦେଇ ?

ତଅପୋଇ—ତୋର ସୁମନ୍ତ ସାଆନ୍ତଙ୍କୁ ଡାକିଆଣିପାରିବୁ ?

ଚମ୍ପୀ—କୋଉଁସାଆନ୍ତଙ୍କୁ ?

ତଅପୋଇ—(ଆଉ ସେମିତି ବିଳମ୍ବ ଅସହ୍ୟ) ହଁ ହଁ, କୋଉଁସାଆନ୍ତଙ୍କୁ ।

(ଚମ୍ପୀ ଚଞ୍ଚଳ ଚାଲିଗଲା—କିଛି କ୍ଷଣ ପରେ ସେମିତି ତରତର ହୋଇ ଫେରିଆସିଲା । )

ଚମ୍ପୀ—କୋଉଁସାଆନ୍ତେ ତ ଏଣେ ଆସୁଚନ୍ତି ଦେଇ ! ମୁଁ ଯାଉଚି । ମାଆମାନେ ଫେରିବେଣି—ମତେ ଖୋଜିବେ କାଳେ । (ପ୍ରସ୍ଥାନ)

(ବିପରୀତ ଦିଗରୁ ସୁମନ୍ତ ନିଳେନ୍ଧକୁ ଡାକି ଡାକି ପ୍ରବେଶ କଲେ ।)

ସୁମନ୍ତ—ପାନଖାଉଳି ! ପାନଖାଉଳି ! କିଏ—ତଅପୋଇ ! ପାନଖାଉଳି କାହାନ୍ତି ? ମତେ କହିଥିଲେ 'ବଗିଚାକୁ ଆସିବ—ତମ ସାଙ୍ଗେ କଥା ଅଛି'—କୁଆଡ଼େ ଗଲେ ? ମୁଁ ଦେଖେଁ—ତେଣେ ଖଞ୍ଜାଆଡ଼େ......

(ଚାଲିଯାଉଥିଲେ, ତଅପୋଇ ଡାକିଲା)

ତଅପୋଇ—ଶୁଣ ! (ସୁମନ୍ତ ଫେରି ଛିଡ଼ାହେଲେ)

ତଅପୋଇ—ଭାଇମାନେ ମତେ ତମ ହାତରେ ସଁପିଦେଇ ଯାଇଥିଲେ—ତମର ମନେଅଛି ?

ସୁମନ୍ତ—ଅଛି; ମାତ୍ର ସେତେବେଳେ ମୋ କଥା ମୁଁ କହିବାକୁ ଅବସର ପାଇନାହିଁ ।

ତଅପୋଇ—ତମ କଥା ଶୁଣିବା ଆଗରୁ ମତେ ଯେ ବାରଲୋକଙ୍କ କଥା ଶୁଣିବାକୁ ପଡ଼ୁଚି—ଏ କଥା ଜାଣ ?

ସୁମନ୍ତ—ବାରଲୋକଙ୍କ କଥା !!

ତଅପୋଇ—ହଁ, ତମର ଜାତି କୁଳ ନାହିଁ; ଘରଦ୍ୱାର ନାହିଁ—ବଡ଼ଭାଇ ତୁମକୁ କୋଉଠି ଧରିଆଣିଛନ୍ତି......

ସୁମନ୍ତ—ସେଥିପାଇଁ କହୁଚି—ମତେ କୌଣସି କଥା ଲାଗି ଦାୟୀ କରିବା ଆଗରୁ ମୋ କଥା ଶୁଣିବା ତ ଉଚିତ ।

ତଅପୋଇ—ତମର ଜାଡ଼-କୁଳ-ପରଦ୍ୱାର ମୁଁ ଜାଣେ, ହୁଏତ ଲୋକେ ବି ଜାଣନ୍ତି । ହେଲେ ସେମାନେ କେବେ ବି କହୁଚନ୍ତି, କହୁଥିବେ—ଏ ସବୁର ମୁହଁ ବନ୍ଦ କରିବାର ଦାୟିତ୍ୱ କଅଣ ତମର ନୁହେଁ ବୋଲି ତମେ କହୁଚ ?

ସୁମନ୍ତ—ସେ ଦାୟିତ୍ୱ ମୁଁ ଦାବିକରି ନେଇପାରେ କି ନାହିଁ ସେ କଥା ବିଚାର ନ କରି ତମର ଭାଇମାନେ ହୁଏତ ମୋ ଉପରେ ତା ଲଦି ଦେଇଚନ୍ତି । ମୁଁ ଆଜ ତମକୁ ମୋର ସବୁ କଥା କହିବି ।

ତଅପୋଇ—ଥାଉ, ସେ ସବୁ ତ କଥା । ଆଉ କାହାଣୀର ମୂଳଦୁଆ ଉପରେ ମନର ଦେଉଳ ଗଢ଼ି, ମୁଁ ମୋର ଭାଇମାନଙ୍କର ସୁନାର ସ୍ୱପ୍ନ ସଫଳ କରିପାରିବି ଭାବିଚ ? ତମେ ଯାଅ !

(ଚଞ୍ଚଳ ବଗିଚ୍ଚ ଗ୍ରାଣ୍ଡୁ ଚାଲିଗଲା)

ସୁମନ୍ତ—ତଅପୋଇ ! ତଅପୋଇ !

(କିଛିକ୍ଷଣ ସ୍ଥାଣୁବତ୍ ଛିଡ଼ା ହୋଇ ରହିଲେ, ତାଙ୍କ ମନ ଭିତରେ କେତେ ଚିନ୍ତା ଖେଳିଗଲା ।)

ନେପଥ୍ୟେ ଚମ୍ପୀ—ସୁମନ୍ତ ସା'ନ୍ତେ ! ତୁମକୁ କିଏ ଦାଣ୍ଡପଟେ ଡାକୁଚ ।

ସୁମନ୍ତ—ଏଁ !! (ପ୍ରକୃତିସ୍ଥ ହୋଇ) ହଉ ।

(ଚାଲିଗଲେ ବାହାର ଆଡ଼େ । କିଛି କ୍ଷଣ ପରେ ତଅପୋଇକ ଧରି ମାଳେଇ ଭିତରଆଡ଼ୁ ପ୍ରବେଶ କଲେ ।)

ମାଳେଇ—ମୁଁ ଆଯୁ ଆସୁ ସ୍ୱାଗ ଭିତରେ—ଉହୁଁ—କଅଣ ଗୋଟାଏ ହେଇଚ କଷ୍ଟେ ।

ତଅପୋଇ—(ମନର ଭାବ ଗୋପନ କରି)—ହେଇଚ ତୋ ମୁଣ୍ଡ, ତୋ ଗଣ୍ଡି !

ମାଳେଇ—ଉହୁଁ, ମୋ ମୁଣ୍ଡ, ମୋ ଗଣ୍ଡି ତ ଠିକ୍ ଅଛି; ତୋ ମୁଣ୍ଡ, ନ ହେଲେ ତା ମୁଣ୍ଡ, ଦଇଟାରୁ ଗୋଟାଏ ବିଗିଡ଼ି ଯାଇଚି । (ଘୁରିଆଡ଼େ

ବୁଢ଼ୀ) ମ, କାହିଁ ମ ? ସୁମନ୍ତ ଏଠି ଥିଲା ପରା, କାହିଁ ? ତା'ହେଲେ ତାର ମୁଣ୍ଡ ବଗିଡ଼ିଛ ।

ତଅପୋଇ—(ନୀରବ)

ନୀଳେନ୍ଦ୍ର—କଲେ କିଛି କହୁନୁ ଯେ ? ହୁଁ, ତୁଇ ତା ହେଲେ ତା ମୁଣ୍ଡକୁ ବଗାଡ଼ି ଦେଇଚୁ ।

ତଅପୋଇ—ତୋ ପରି ବଇଦ ଯାହା···

ନୀଳେନ୍ଦ୍ର—ମୋପରି ବଇଦ ଥିଲେ ତ ମୁଣ୍ଡ ବେମାର ଗୁଡ଼ି ପଳେଇବ ! ହଇଲେ ତୁଆଭଉଣି, କଅଣ ହେଇଚ କହୁବୁଟି ?

(ବେଢ ଉପରେ ବସି ତଅପୋଇଙ୍କ ପାଖରେ ବସାଇଲେ ।)

ତଅପୋଇ—କିଛି ତ ହୋଇନାହିଁ ।

ନୀଳେନ୍ଦ୍ର—ଫେର୍ କଥା ଲୁଚଉଚୁ ?

ତଅପୋଇ—(ଅସହ୍ୟ ହେଲା ଯେପରି) ଓଃ ! କଥାର ସୁଅ କଅଣ ଆଉ ବନ୍ଦ ହେବ ନାହିଁ !! (ବିରକ୍ତିରେ ଉଠି ଚାଲିଯାଉଥିଲା, ହଠାତ୍ ଫେରିପଡ଼ି) ଆ—ନୂଆବୋଉଜ ! ଯିବା ଘରକୁ ।

(ନୀଳେନ୍ଦ୍ର ଆହତ ହୋଇ ଗମ୍ଭୀର ଭାବରେ ରହିଲେ ।)

ତଅପୋଇ—(ନୀଳେନ୍ଦ୍ର ପାଖକୁ ଆସି) ନୂଆବୋଉଜ, ରାଗିଲୁ ମୋ ଉପରେ ? ମୁଁ ବଡ଼ ହତଭାଗୀ ନୂଆବୋଉଜ ! ତୁ ମୋ ଉପରେ ରାଗନା ! ତୋ ଗୋଡ଼ ଧରୁଚ । ଆ—ଘରକୁ ଆ—ତତେ ସବୁ କହିବ ।

(ନୀଳେନ୍ଦ୍ରକୁ ସାଥିରେ ଧରି ଘରଆଡ଼େ ଚାଲିଲେ ତଅପୋଇ । ଏଇ ସମୟରେ 'ସାନବୋଉଜ !' 'ସାନବୋଉଜ !' ଡାକି ଡାକି ପ୍ରବେଶ କଲେ ସୁମନ୍ତ ବାହାରପଟୁ । ନୀଳେନ୍ଦ୍ର ଓ ତଅପୋଇ ଫେରି ଛିଡ଼ାହେଲେ ।)

(ସୁମନ୍ତ ପ୍ରବେଶ କରି ହଠାତ୍ ଛିଡ଼ା ହୋଇଗଲେ)

ନୀଳେନ୍ଦ୍ର—କହୋ ! କଅଣ କହୁ କହୁ ଅଟିଗଲ ଯେ ?

ସୁମନ୍ତ—କହିବାର ବେଶି କିଛି ନାହିଁ, ତେବେ ଯୋଉ ଝିଙ୍କ କଥା କହିବ ବୋଲି ଆସିଲି ସେତକ ବି କହିବାକୁ ସାହସ ପାଉନାହିଁ ।

ତମମାନଙ୍କର ସ୍ନେହ-ଶ୍ରଦ୍ଧାର ବନ୍ଧନ ମୋର ମୂର୍ଦ୍ଧ ବନ୍ଧ କରିଦେଉଚି ସାନଭାଉଜ !

ମାଳେନ୍ଦ୍ର—କଅଣ—କଥା କଅଣ ସୁମନ୍ତ୍ର ?

ସୁମନ୍ତ୍ର—ମୁଁ ଆଜ ଚାଲିଯାଉଚି, ବହୁତ ଦୂରକୁ ଯାଉଚି—ହୁଏତ ଆଉ ଫେରିବି କି ନାହିଁ ସେ କଥା ବି ଏବେନେ କହିପାରୁନାହିଁ ।

ତଅପୋଇ—ଓ···ଏଇ କଥା ପାଇଁ ଏତେ ବଡ଼ ଗୌରଚନ୍ଦ୍ରିକା !

ସୁମନ୍ତ୍ର—ତଅପୋଇ, ମତେ ବିଦାୟ ଦିଅ !

ମାଳେନ୍ଦ୍ର—ସୁମନ୍ତ୍ର !

ସୁମନ୍ତ୍ର—ଭାଇମାନେ ଘରେ ନାହାନ୍ତି । ଏତେବେଳେ ଏ ଅବସ୍ଥା—ଏଠୁ ଯେ କି ମନରେ ବିଦାୟ ନେବି···

ମାଳେନ୍ଦ୍ର—ହଠାତ୍ ଏମିତି କଣ କାମ ?

ସୁମନ୍ତ୍ର—ଜଣେ ଲୋକ ଆସିଚି ସାନଭାଉଜ—ବହୁ ଦୂର—ତାମ୍ରଲିପ୍ତରୁ—ମତେ ଡାକିନବାକୁ—ବାହାରେ ଛିଡ଼ାହୋଇଚି ସେ ।

ମାଳେନ୍ଦ୍ର—ତାମ୍ରଲିପ୍ତ ! ତମ ଘର ପାଖରୁ ଲୋକ ଆସିଚି ସୁମନ୍ତ୍ର ?

ସୁମନ୍ତ୍ର—ଘର ! ଘର ମୋର କାହିଁ ସାନଭାଉଜ ! ମତେ ବିଦାୟ ଦିଅ ।

ମାଳେନ୍ଦ୍ର—ଆଉ କଅଣ ଫେରିବାର ଆଶା ନାହିଁ ?

ସୁମନ୍ତ୍ର—ଆଶା ଯେତ ମଣିଷ ବଞ୍ଚେ ସାନଭାଉଜ ! ମତେ ଆଜ ଖୁସିମନରେ ବିଦାୟ ଦିଅ । (ମାଳେନ୍ଦ୍ରକୁ ପ୍ରଣାମ କଲେ)

ମାଳେନ୍ଦ୍ର—ଥାଉ, ଥାଉ ଭାଇ ! ହେଲେ କାହିଁକି—କି କାମ ?

ସୁମନ୍ତ୍ର—ସେ କଥା ମତେ ଏବେନେ ପଚାର ନାହିଁ ସାନଭାଉଜ ! ପ୍ରଭୁଙ୍କ ଦୟା ହେଲେ ଫେର୍ ଦେଖାହେବ—ଏ ଦୁଃଖୀ ଜୀବନର କରୁଣ ଇତିହାସ ତମେ ଶୁଣିବ—ମୋର ମନ—ଜୀବନ ଧନ୍ୟ ହେବ ! ମୁଁ ଆସେ ସାନଭାଉଜ ! ମୁଁ ଆସେ ତଅପୋଇ ! (ପ୍ରସ୍ଥାନ)

ମାଳେନ୍ଦ୍ର—(ହତାଶଭାବେ) ଚାଲିଆଉଛନ୍ତି !

ତଅପୋଇ—(ଆଉ ଧୈର୍ଯ୍ୟ ରଖି ପାରିଲାନାହିଁ) ନୂଆବୋଉଜ !

(ମାଳେନ୍ଦ୍ରର ବକ୍ଷ ଉପରେ କାନ୍ଦୁଡ଼ାହୋଇ ପଡ଼ିଲା)

## ଚତୁର୍ଥ ଦୃଶ୍ୟ

[ ବିଷ୍ଣୁପୁର ଗାଁମୁଣ୍ଡ ରାସ୍ତା—ଦୂରରେ ନଈ । ହଂସ ରଥେ କହୁ କହୁ ଚାଲିଛନ୍ତି—ତାଙ୍କ ପଛେ ପଛେ ଧାଇଁଚି ତାଙ୍କ ପୁଅ ଧନୁଆ । ]

ହଂସ—ନା, ଆଉ ନୁହଁରେ ବାପ—ଆଉ ନୁହେଁ—ଆଉ ମୁଁ ଘରମୁହାଁ ହେବ ନାହିଁ—ବଇଷମ ହେବି—ହେବି—ହେବି !

ଧନୁଆ—ଘରକୁ ଫେରିଚାଲ ନନା !

ହଂସ—ଆରେ, ତୁ ତ ଭାରି ଅମାନିଆ ପିଲା । କିରେ, କହୁଡ଼ି କଅଣ ଗଛରେ ଫଳୁଚି ? ହାଟପାଳିକି ହାଟପାଳି ଚାରି-ଚାରି କଡ଼ା କହୁଡ଼ି ଉଡ଼େଇଦବ ? ନା, ମୁଁ ବଇଷମ ହେବି, ଏ ଗାଆଁ ଛାଡ଼ିବି ।

ଧନୁଆ—ନନା, ଚାଲ ମ ।

ହଂସ—କଅଣ କହିଲୁ ? ହଁ, ଉଡ଼େଇଦେବ ? କାହିଁ ? ସେ ମୁଣ୍ଡ ନ ରହିଲେ ? ସେ କେଶ ଉପୁଡ଼ି ନାଣ୍ଡି ହେଲେ ? ତୋ ବୋଉ ବୋଲି କେହି ଚିହ୍ନିବେ ନାହିଁ ? ହଇରେ, ହାଟପାଳିକି ହାଟପାଳି ଚାରିଚାରି କଡ଼ା କହୁଡ଼ି—କଣ୍ଢେ-ନା କପୂର ଆଉ ନଡ଼ିଆ ମାଲପା ! ନା—ଯାଉ ସେ କେଶ ଉପୁଡ଼ି, ଯାଉ ସେ ମୁଣ୍ଡ ଛିଡ଼ି । ମୁଁ ବଇଷମ ହେବି ।

ଧନୁଆ—ତମେ ତ' ସବୁଦିନେ ଲଗେଇବାକୁ ମାଲପା ଟିକେ ଦେଲନାହିଁ । ବୋଉ ମୁଣ୍ଡରେ ଉକୁଣି ହେଲେ···

ହଂସ—(ନଶୁଣିପାରି) ଓ, କଅଣ କହୁଚୁ ?

ଧନୁଆ—ଉକୁଣି ! ଉକୁଣି !!

ହଂସ—ହଉ ଉକୁଣି ! ଉକୁଣି ହଉ—ପୋକ ହଉ—ଲଙ୍ଗୁଡ଼ା ପୋକ ଯାଲୁବାଲୁ ହୁଅନ୍ତୁ ସେ ମୁଣ୍ଡରେ । ମୋର କଅଣ ? ହଇରେ, ତା ମୁଣ୍ଡରେ ଉକୁଣି ହବ ବୋଲି ମତେ କହୁଡ଼ି ତଣ୍ଡେଇବ ? ନା—ମୁଁ ଆଉ ସମ୍ଭାଳି ପାରିବ ନାହିଁ—ମୁଁ ବଇଷମ ହେବି ! ତୁ ଫେରିଯା ଧନୁଆ—ମୁଁ ଆଉ ଫେରିବ ନାହିଁ ।

ଧନୁଆ—ନନା !

ହଂସ—କଅଣ, ନା’ ? ବଇଷମ ହେବ ନାହିଁ କହୁଚ୍ ? କଅଣ କରିବ ତେବେ ? ଥାଳ ଧରି ଭିକ୍ଷା କରିବ ନା ତୋ ବୋଉ ହାତରେ ଏ ପୈତୃକ ପ୍ରାଣଟା ଦେବ ? ହଇରେ, ତୋ ବୋହୂର ହଉଣି ବଡ଼ ହେଲା—ମୋ କହୁଡ଼ି ବଡ଼ ହେଲା ନାହିଁ ? ନା, ମୁଁ ବଇଷମ ହେବ ।

(ଏତକବେଳେ ଦୂରରୁ ବୈଷ୍ଣବୀର କୀର୍ତ୍ତନ ଶୁଣାଗଲା ।)

ଧନୁଆ—ନନା, ସେ ମାତା ଆସୁଚ ।

ହଂସ—କୋଉ ମାତା ?

ଧନୁଆ—ସେଇ—ଯିଏ ଆମ ଗାଁ’କୁ ନୂଆ ହୋଇ ଆସିଚ—ଗୀତ ବୋଲି ଭିକ ମାଗୁଚ ।

ହଂସ—ଆସୁଚ ? ଆସୁ, ମୁଁ ତାହାର ସାଙ୍ଗରେ ଯିବ ବାହାର ।

(ବୈଷ୍ଣବୀର କୀର୍ତ୍ତନ ଗାଇ ଗାଇ ପ୍ରବେଶ)

ଛନ୍ଦ ନ ଜାଣି, ବନ୍ଧନ ଖୋଜି ବୁଲ ଗୋ—
କଣେଶ୍ୱ ରାଧ

କଥା ଶୁଣ, ଅକାରଣ ବଂଶୀ-ସ୍ୱନ ଅନୁସର
କୁଞ୍ଜେ ମିଳଇ ଯାଇ !

ଭଲ କ ଦେଖିଲ ବାରେ କହ
କଳାରୂପେ ଏ କ ମୋହ,

ବଙ୍କା ଠାଣି ତାର, ବଙ୍କା ବଙ୍କା ହସେ—
ବଙ୍କା ନୟନେ ଚାହିଁ ।

କହିଲେ କଣେଶ୍ୱ ଶୁଣି—
‘ସଖି, ନକହ ଏସନ ପୁଣି,
ସେହି ବନ୍ଧନ ଲଗି ମରେ
ଭବ-ବନ୍ଧନୁ ତରିବାରେ,
କଳାରୂପ ଗୋରୀ ମୋ ତନୁ-ମୁକୁରେ
ଫୁଟାଉ ସହସ୍ର ଛବି
ଏଇ ଆଶାରେ ମୁଁ ଯିବା ବାଇ !!

ବାଙ୍କ ଗୁହାଣିକ ଡରଗଲେ ସହୁ
ସିଧା ପଥ ଆଉ କାହିଁ ?
କହ, ଗୁଚ୍ଛାରେ ହେଲି କ ବାଇ ?

ହଂସ—ହେଇଛି ବଇଷମୀ ! ଶୁଣ, ତମେ ମତେ ନେଇ ଚାଲ ।

ବୈଷ୍ଣବୀ—ମୁଁ କେଉଁଠିକି ନେବି ବାବା ? ମୋର ତ ଘରଦ୍ୱାର କିଛି ନାହିଁ !

ହଂସ—ଓ ? କଅଣ କହୁଚନ୍ତି ଧନୁଆ ?

ଧନୁଆ—ସେ କହୁଚନ୍ତି ତାଙ୍କର ଘର-ଦୁଆର ନାହିଁ ।

ହଂସ—ନ ଥାଉ ! ମୁଁ ବି ଘର-ଦୁଆର ଛାଡ଼ିବି—ଛାଡ଼ିବି କଅଣ—ଛାଡ଼ିଲି ତ ଜାଣ ! ହଁ, ମୁଁ ତମରି ସାଙ୍ଗରେ ବୁଲିବୁଲି ହରିନାମ ଜପିବି ।

ବୈଷ୍ଣବୀ—ହରିନାମ ଜପିବାକୁ ଘରଦ୍ୱାର ଛାଡ଼ିବା କଅଣ ଦରକାର ?

ହଂସ—ଓଃ !

ଧନୁଆ—କହିଲେ—ହରିନାମ ଜପିବ ତ ଘର କାହିଁକି ଛାଡ଼ିବ ?

ହଂସ—ବ୍ରାହ୍ମଣୀ-ଡାଉ ମୁଁ ଆଉ ସହିପାରିବି ନାହିଁ ।

ବୈଷ୍ଣବୀ—ସବୁ ଦାଉ ସହି ଯିଏ ହରିନାମ ନଏ, ସେଇ ଏକା ଖାଣ୍ଟି ବୈଷ୍ଣବ ବାବା !

ହଂସ—ଓ ! କଅଣ କହୁଚନ୍ତି; କହିଦଉନ୍ତୁ କାହିଁକି ଧନୁଆ ?

ଧନୁଆ—କହିଲେ—ଘରେ ରହି ଯିଏ ହରିନାମ ଜପେ ସେଇ ଏକା ଠିକଣା ବୈଷ୍ଣବ ।

ହଂସ—ଘରେ ରହି ଜପି ହବ ? କଅଣ କହୁଚ ମାତା—ଘରେ ବସି ବଇଷମ ହୋଇପାରିବ ?

ବୈଷ୍ଣବୀ—(ମୁଣ୍ଡ ଟୁଙ୍ଗାଇ 'ହଁ' ଭରିଲେ)

ହଂସ—ହେଲା, ତମରି କଥା ହେଲା ! ଘରେ ରହିବି—ବଇଷମ ହେବି—ଆଉ ଯିବି କାହିଁକି କୁଆଡ଼େ ? କଉଡ଼ି ଛାଳି ଘର ତୋଳିଚି—ଗାଈ, ବଳଦ, ସୁନା, ରୁପା, ବାଲ-ବାର—ଏସବୁ କଅଣ ଶତ୍ରୁକୁ ସଁପି ହୋଇ ଯିବ ? ନା—ତେମେ ଯାହା କହିଲ ଠିକ୍ । ଘରେ ବସିବି—ହେଲେ ବଇଷମ ହେବି । କଅଣ କହୁଚ ମାତା—ଫେରିବି ତ ?

ବୈଷ୍ଣବୀ—ହଁ ।
ହଂସ—କଅଣ କହିଲେ ଧନୁଆ—କହନ୍ତୁ କାହିଁକି ?
ଧନୁଆ—କହିଲେ—ହଁ; ଚଞ୍ଚଳ ଫେର ।
ହଂସ--ହେଲା; ଫେରିଲା—ଚମତ୍ କଥାରେ ଫେରିଲ ମାତା ! ହେଲେ
ବଇଷମ ହବା କଥାଟି ସାର ! ଧନୁଆ,—ଯା'—ଧାଇଁଯା—
ବୋଉକୁ କହିବୁ--କଅଣ କହିବୁ ?
ଧନୁଆ---ନନା ଫେରୁଚନ୍ତି ।
ହଂସ—ଖାଲି ଫେରୁନାହାନ୍ତି, ବଇଷମ ହବାକୁ ଫେରୁଛନ୍ତି । ଯା, ଧାଇଁଯା !
ହେଲେ ଚମତ୍ କଥାରେ ଫେରିଲ ମାତା—ହଁ, ଗଲି ମାତା !
(ପ୍ରସ୍ଥାନ । ବୈଷ୍ଣବୀ ମଧ୍ୟ କୀର୍ତ୍ତନ ଗାଇ ଗାଇ ପ୍ରସ୍ଥାନ କଲେ ।)

## ପଞ୍ଚମ ଦୃଶ୍ୟ

[ ସାଧବଘର ଅଗଣା—ଗାଲିଗ୍ ପଡ଼ିଚ—ପିକଦାନ, ପାନବଟା, ପଙ୍ଖା ପ୍ରଭୃତି ରଖାଯାଇଚ । ନାଳେଧକ ଲୁଡ଼ି ବାକ୍ସ ଛଅବୋହୂ ବସିଚନ୍ତି; ତାଙ୍କ ଭିତରୁ ଚାରିଜଣ—ଉଜ୍ଜ୍ୱଳା, ସୁଭଦ୍ରା, ବିମଳା ଓ ବିଧବା ବ୍ରାହ୍ମଣୀ ବସି କଉଡ଼ି ଖେଳୁଛନ୍ତି—ଅନ୍ୟମାନେ ବସି ଦେଖୁଚନ୍ତି—ହସ-ଖୁସିରେ ଗପ ଚାଲିଚ; ଏଣେ ଖେଳ ବି ଚାଲିଚ । ଅଗଣା ପଛପଟ ପାଚେରି-ଦୁଆର ଟିକିଏ ମେଲା ଅଛି—ଆରପଟ ଖଞ୍ଜାର କିୟଦଂଶ ଦିଶୁଚି । ]
ଉଜ୍ଜ୍ୱଳା—ଦେଖିବ, ଦେଖିବ—ମୋର ପଚିଶ ଥିଆ । (କଉଡ଼ି ପକେଇଲେ)
ସୁଭଦ୍ରା—(ଦେଖି) ଆଗୋ, ପଡ଼ିଲା ଦୁଗା, କହିଲେ ପଚିଶ ଥିଆ !!—
(ହସିଲେ)
ବ୍ରାହ୍ମଣୀ—ଆଗୋ ବସିପାରିଲୁଁ ନାହିଁ ବଡ଼ବୋହୂ ? କଅଣ ପକଉଚ ବା ?
ନଅ—ଦାନ ନଅ । (ନିଜେ ପକେଇଲେ)
ବିମଳା—(ଦେଖି)ଏଇ ପଚିଶ ଦାନ ନାନାଙ୍କ ହାତରେ ସବୁ ପଡ଼ୁଚି ମ !
ସୁଭଦ୍ରା—ଦେଖିଲ ଅପା, ଦଣ୍ଡରେ ମରୁଚ କି ନାହିଁ ?
ଉଜ୍ଜ୍ୱଳା—କିଏ, ବିମଳା ନା ?

ବିମଳା—ମୁଁ କାହିଁକି ମରିବି ମ ?

ବ୍ରାହ୍ମଣୀ—ତୁ କାହିଁକି ମରିବୁ ବା—ତୋ 'ସାର' ।

ସୁଭଦ୍ରା—ହଉ ନିଅ ଦଶ । (ପକେଇଲେ)

ଉଜ୍ଜ୍ୱଳା—(ଦେଖି) ଚୁଣ ! ଆହା-ହା—ଡାକିନ ଦଶ, ପକେଇବ ଚୁଣ !

(ସମସ୍ତେ ହସିଉଠିଲେ; ମାଳେନ୍ଦ୍ରର ପ୍ରବେଶ )

ବ୍ରାହ୍ମଣୀ—ଏଇ ସାନବୋଉ ଅଇଲିଣି ।

ଉଜ୍ଜ୍ୱଳା—ତା କଥା ଭଲ କହୁଚ ! ଶଶୁର ଥିଲେ ଯେ ସଦାବେଳେ 'ସାନ-ବୋହୂ' 'ସାନବୋହୂ' ବୋଲି ପାଗଳ । ଗେରସ୍ତ ତାଙ୍କର ଯେ ଦଣ୍ଡେ ନ ଦେଖିଲେ ବିକଳ । ଏବେ ନଣନ୍ଦ ସାଆନ୍ତାଣୀ ତ···

ମାଳେନ୍ଦ୍ର—ଏ କଥା କାହିଁକି କହିଲ ବଡ଼ ଅପା ? ମୁଁ କଣ ତମର ଭିତରୁ ଜଣେ ନୁହେଁ ?

ବିମଳା—ମୁଁ କଉଡ଼ି ଖେଳିବାକୁ ଡାକିଲି ଯେ କହିଲା—ତମେସବୁ ଖେଳ, ମୁଁ ବୁଆଭଉଣୀ ପାଖରେ ଅଛୁ, ଏଇନେ ଯାଇ ପାରିବ ନାହିଁ ।

(ବ୍ରାହ୍ମଣୀ ହସିଉଠିଲେ)

ସୁଭଦ୍ରା—ବୁଆ ହେଉଚନ୍ତି—ବୁଆ !!

ବ୍ରାହ୍ମଣୀ—ସତେ ମ' ବଡ଼ବୋଉ, ମୁଁ ଭାବୁଥିଲି ତଅପୋଇଟା ଭଳି ସରଳୀ ପିଲା—କିଛୁ ଜାଣେ ନାହିଁ । ତା ପେଟରେ ପୁଣି ଏତକ ଗୁଣ !! ହେଲେ ସେ ଟୋକୀର କିଛୁ ଦୋଷନାହିଁ । ଯେତେ ହେଲେ ପରପୁଅ—ମିଛରେ କହିବ ?

ଉଜ୍ଜ୍ୱଳା—ସେ ପୁଅ ତ ଏମିତି ସୁଧାର ଯେ ଏତେ ଦିନ ଏଠି ରହିଲା, କାହାରିକି ମୁହଁ ଟେକି ଥରେ ଚାହିଁ ନାହିଁ ! କଥା କହିବ ଯେ, କି ଧୀର !

ବ୍ରାହ୍ମଣୀ—କେଡ଼େ ବଡ଼ଘରର ଝିଅ ତୁ ! ବାହା ହେଇଚୁ ନା ସାହା ହେଇଚୁ—କଥା ନାଗେଚି—କଥା ତ ଏମିତି କେତେ ଜାଗାରେ ନାଗେ—କେତେ ଜାଗାରେ ଛୁଟେ । ସେଥିପାଇଁ ତୁ ଏମିତି···

(ହଠାତ୍ ମାଳେନ୍ଦ୍ରଙ୍କ ଚାହିଁ ଅଟିଗଲେ । )

ମାଳେନ୍ଦ୍ର—(ବିରକ୍ତରେ) କଅଣ ଏମିତି ନାନୀ···

ବ୍ରାହ୍ମଣୀ—କେଜାଣି ଲୋ ମା—ମୁଁ କି ଜାଣେ କଅଣ ? ସେ ଟୋକାଟା ପଳେଇଗଲା ବୋଲି ଶୁଣିଲି ଯେ···(ପୁଣି ଥମିଗଲେ)

(ମାଳେନ୍ଦ୍ରକୁ ଏ ସବୁ ଆଲୋଚନା ଭଲ ଲାଗିଲା ନାହିଁ । ସେ ସ୍ଥାନ ଛାଡ଼ି ଚାଲିଯାଉଥିଲା । ଉତ୍କଳା କହିଲେ—)

ଉତ୍କଳା—କଣ, ରାଗିକରି ଚାଲିଯାଉଚୁ କି ?

ମାଳେନ୍ଦ୍ର—ନା, ରାଗିବି କାହିଁକି ?

ଉତ୍କଳା—ତୋ ଭୁଆଁଭଉଣୀ କଥା ପଡ଼ିବାରୁ କାଳେ ରାଗିଯାଇଥିବୁ ?

ସୁଭଦ୍ରା—ଆଲୋ, ଏକା ତୋର କଅଣ ନଣନ୍ଦ—ଆମର ନୁହେଁ ? ଘରଜୁଆଁ ତ ଅଣ୍ଟିରେ ପୂରେଇବା—କଅଣ କରିବା କହ ?

ମାଳେନ୍ଦ୍ର—ଅଣ୍ଟି ପୋଡ଼ିଯିବ ମହିଆଣୀ ଅପା ! ଯିଏ ଯେମିତି କାମ କରିବ, ସେମିତି ଫଳ ପାଇବ ।

ବ୍ରାହ୍ମଣୀ—ତା ସତ ସାନବୋଉ !

ଉତ୍କଳା—ତଅପୋଇ କାହିଁ କି ? କଉଡ଼ି ଖେଳିବାକୁ ତ ଆସିଲା ନାହିଁ ସାନବୋଉ !

ମାଳେନ୍ଦ୍ର—ଡାକୁ କର—ସେ ଶୋଇଚି ।

ବିମଳା ଓ ସୁଭଦ୍ରା—ସତେ ! ତଅପୋଇକି ଜର !

ସମସ୍ତେ—ଆହା !    (ମାଳେନ୍ଦ୍ର ଚାଲିଗଲେ)

ବ୍ରାହ୍ମଣୀ—ରାଧାବଲ୍ଲଭ ହେ, ପାରିକର ।

ସୁଭଦ୍ରା—ସୁମନ୍ତ ଏବେ କୋଉଠିକି ଗଲା ଯେ ? ତାର ପରି ଘରଦ୍ୱାର କିଛି ନାହିଁ ?

ଉତ୍କଳା—ଅଛି ଲୋ, ସବୁ ଅଛି, ବ୍ରାହ୍ମଣୀ ନାନୀଙ୍କଠୁ ଶୁଣ୍ !

ସୁଭଦ୍ରା—ନାନୀ କେମିତି ଜାଣିଲେ ଯେ ?

ଉତ୍କଳା—ସେ ଯୋଉ ଲୋକଟା ସୁମନ୍ତକୁ ନବାକୁ ଆସିଥିଲା—ସେ ଏ ଗାଁରେ ପହଞ୍ଚି ପହିଲେ ନାନୀଙ୍କ ଘରେ ରହିଲା—ସେଠି ଖାଇଲା—ସବୁକଥା ନାନୀଙ୍କି ଗୋଟି ଗୋଟି କରି କହିଲା ।

ଅନ୍ୟମାନେ—ସତେ ନାନ !
ବ୍ରାହ୍ମଣୀ—ହଁ ଲେ—ସେ ଟୋକାର ସବୁ ଖବର ମତେ ଜଣା ଟି !
ବିମଳା—ସତରେ ଛନି ସ୍ବପ୍ନ ଟି ସେ ?
ବ୍ରାହ୍ମଣୀ—ହଁ, ଛନି ସ୍ବପ୍ନ କଥାଟି ସତ, ରଜାଘର ପିଲ ସେ ।
ସୁଭଦ୍ରା—ଫେରିଆସିବଟି ବାହା ହବାକୁ ନାନ !
ବ୍ରାହ୍ମଣୀ—ମହିିଆଣୀ କଥା ଶୁଣୁଥିବ ! ଆଉ କେଇଟା ବାହା ହବ କ ସେ ?
ତାର ପରୁ ଭଉଣୀ ଅଛୁ—ତନ ଗୁଣଟା ପିଲଝିଲ—ଶାଶୁ, ଶଶୁର !
ସମସ୍ତେ—ସତେ ! ହଇଲେ !
(ଆଶ୍ଚର୍ଯ୍ୟ ହୋଇ ପରସ୍ପର ମୁହଁ ଚୁହାଁଚୁହିଁ ହେଲେ । )
ବ୍ରାହ୍ମଣୀ—ମନ ମଣଗଲ କଲେ ବୋହୂମାନେ ? ଜଣଦେଇ କରିବାକୁ
କେତେ ଯତନ କର ନ ଥିଲ !
ବିମଳା—ତାର ପିଲଝିଲ ଅଛନ୍ତି ?
ବ୍ରାହ୍ମଣୀ—ଆଉ—ତନ—ତନଟା ପୁଅ—ଯୋଡ଼ାଏ ଝିଅ—ବଡ଼ପୁଅଟିକ
ପରୁ ସାତ ବରଷ ! ଯେ ପଳାନ୍ତି—ସେ ଚରନ୍ତି !
ସୁଭଦ୍ରା—ସେ ପିନା ତରଗଲ—ବାଙ୍କା···
ବ୍ରାହ୍ମଣୀ—ତମେମାନେ ବ ତରିଯିବ ଲେ—ନଣନ୍ଦର ସେବା କର କର
ତମେମାନେ ବ ତରିଯିବ ! ଫୁଲଦୋଳରେ ଝୁଲ—ସୁନା ଥାଳରେ
ଖିଆ—ପାଦରେ ଅଳତା ଲେଖିଦଅ—ବଦ୍ଧକୁ ଗହଣା ଖଞ୍ଜିଦଅ—
କୋଉ କାଲେ ଦେଖା ନଥିଲ କ କୋଉ କାଲେ ଶୁଣା ନଥିଲ !!
ଉଜ୍ଜ୍ୱଳା—ଯେତକ ଦେଖିଥିଲ ଶୁଣିଥିଲ ସେତକ, ଆଉ ନାହିଁ ମ ନାନ !
ବିମଳା—ଆଉ ସେ ପୁନର୍ଥ ନାହିଁ କ ସେ ପିଠା ନାହିଁ ।
ବ୍ରାହ୍ମଣୀ—ଆଗୋ, ତମେ ହେଲ ଘରର ବୋହୂ—ଖାଉନ୍ଦାଣୀ । ପରଘରୁ
ଝିଅଟା—ତେମେ ସବୁ ମାନତା ଲୋକ ଏମିତ ସେବା ତ
ଦାସୀ-ପୋଇଲୀଏ କରିବେ ନାହିଁ । ହଁ, ମୋର କଅଣ, ମୋ ଗୋବନ୍ଦ
ଭଲ କ ମୁଁ ଭଲ ! (ଜନ୍ମସ୍ବରରେ) ହେଇଟି ! ସେଇ ନଣନ୍ଦ ଫେରି

ଚକୁଳି ପିଠା ପରି ଓଲଟିପଡ଼ିବ ଲୋ, ଓଲଟିପଡ଼ିବ ! ସ୍ତ୍ରୀମାନଙ୍କ ଆଗେ ଚମଣମାନଙ୍କ ନାଁରେ ନଗେଇ କହିବ । ବେଲହୁଁ ବାଟ ସଫା କର ଲୋ—ବେଲହୁଁ ବାଟ ସଫା କର ! ମୁଁ ଫେର୍ ତମକୁ ସବୁ···

(ଏଇ ସମୟରେ ଚମ୍ପୀ ଆସୁଥିବାର ଦୂରରୁ ଦେଖିପାରି ନୀରବ ହେଲା । ସମସ୍ତେ ଖେଳିବାରେ ମନ ଦେଲେ ।)

ବ୍ରାହ୍ମଣୀ—ରାଧାବଲ୍ଲଭ ହେ, ପାରକର ।

(ଚମ୍ପୀର ପ୍ରବେଶ)

ଚମ୍ପୀ--ବଡ଼ମା ! ମହୁ କୋଉଠି ଅଛୁ ଦେଇଯାଅ—ଦେଇ ପଣା ପିଇବ ।

ଉଜ୍ଜ୍ୱଳା—ମୁଁ ତ ଜାଣିନାହିଁ କୋଉଠି ଅଛୁ, ସାନବୋଉକୁ କହିବୁ ଆଡ଼ିଦେବ ।

ଚମ୍ପୀ—ଆଗୋ, ସାନମା' ପଗ୍ର ଜଳେ ପଠାଇଲେ !

ଉଜ୍ଜ୍ୱଳା—ପଠେଇଲେ ତ ପଠେଇଲେ, ରୁ ଯା—ମୁଁ ଯାହା କହିଲି ସେୟା କହିବୁ ।

ଚମ୍ପୀ—ଆଗୋ ରାଗ ହଉଚ କାହିଁକି ମ ? ଦେଇଙ୍କ ମୋର ଜର ହେଇଚ ବୋଲି ପଣାଟିକେ ପାଇଁ ବିକଳ ହଉଚ । ନଇଲେ ସର-ଲହୁଣୀକି ତ ଛୁ' କରିଦେବା ପିଲା ସେ···

(କଣ୍ଠ ରୁଦ୍ଧ ହୋଇଗଲା, କହିପାରିଲା ନାହିଁ, ଚାଲିଗଲା ।)

ବ୍ରାହ୍ମଣୀ—ଭାରି ମୂର୍ଖ ପାଇଚ ଏ ମାଇକିନିଆ !

ବିମଳା—ସତେ ଏକା ବଡ଼ଅପା ! ଚମ୍ପୀକି ମୁହଁ ଦେଇଚ ସେଇ ସାନବୋଉ ।

ବ୍ରାହ୍ମଣୀ—ସାନବୋଉ ! କାହିଁକି ମ ? ତହୁଁ ବଳି, ତହୁଁ ବଳି, ଛଅ-ଛଅଟା 'ଜାଆ' ରହିଚ । ବୋହୂମାନଙ୍କ ଭିତରେ ସବା ସାନ—ହଦିର ମଳି—ସେଇଟା ଫେର୍ ତା ମନଖୁସିରେ ଗୋଟାଏ କାମ କରିଯିବ ? ଯେତେକ ଅବଗୁଣ କଥା ଚମର ଘରେ ।

(ନୀଳେନ୍ଦ୍ରର ପ୍ରବେଶ)

ନୀଳେନ୍ଦ୍ର—ବଡ଼ଅପା, କୋଉଠି ମହୁ ଅଛୁ ମୁଁ ତ ପାଉନାହିଁ !

ଉତ୍କଳା—ମ, ମୁଁ କଅଣ କୁଆଡ଼େ ଖାଇଗଲି ନା ଲୁଚେଇଦେଲି ?
ଆନନ୍ଦ—ଏମିତ କଥା କାହିଁକି କହୁଚ ଅପା ? ଟିକଏ ଉଠିଆସି ଦେଇଗଲେ ହୁଅନ୍ତା ନାହିଁ ? ଝିଅଟାର ଶୋଷରେ ତଣ୍ଟି ଶୁଖିଯାଉଚ !
ଉତ୍କଳା—(ଅନିଚ୍ଛା ସତ୍ତ୍ୱେ) ଚାଲ୍—ଦେଖେଁ କୋଉଠି ଅଛୁ, ମୋର କଅଣ ମନେଅଛୁ ହେଲେ !

(ଉତ୍କଳା ଉଠିଲେ, ତାଙ୍କ ଦେଖାଦେଖି ଅନ୍ୟମାନେ ମଧ୍ୟ)

ବ୍ରାହ୍ମଣୀ—ମୁଁ ତେବେ ଆସେ ବଡ଼ବୋଉ ! କେତେ ଉଚ୍ଚୁର ହେଲାଣି । ଆନେ ସାନବୋଉ, ବଦ୍ରୁ କଅଣ ତାଦ ଓହ୍ଲେଇଲାଣି ଟିକଏ ?
ଆନନ୍ଦ—(ମୁହଁ ବୁଲି) ନା । (କହୁ ଚାଲିଗଲେ)
ବ୍ରାହ୍ମଣୀ—ଓହ୍ଲେଇ ନାଇଁ ? ରାଧାବଲ୍ଲଭ ହେ, ପାରିକର ।

(ବୋହୂମାନଙ୍କ ମୁହଁକୁ ଚାହିଁ ଟିକଏ ହସିଦେଇ ପ୍ରସ୍ଥାନ ।)

(ବୋହୂମାନେ ଖଞ୍ଜାଆଡ଼େ ଚାଲିଗଲେ)

## ଷଷ୍ଠ ଦୃଶ୍ୟ

[ ବଷ୍ଟ୍‌ପୁର—ଗାଁ-ଦାଣ୍ଡ । ନାଲୁ ମିଶ୍ରେ ତରବର ହୋଇ ଚାଲି-ଯାଉଥିଲେ । ବିପରୀତ ଦିଗରୁ ଚମ୍ପୀ ପ୍ରବେଶ କଲା । ନାଲୁ ମିଶ୍ରେ ତାକୁ ଚହ୍ନି ପାରି ଡାକଲେ । ଚମ୍ପୀ ଅଟକିଲା ।]

ନାଲୁ—କିଏ—ଚମ୍ପୀ ! ଚମ୍ପୀ କି ଲୋ !
ଚମ୍ପୀ—ଆଗୋ ମିଶ୍ର ସାଆନ୍ତେ କି ? ପୋଡ଼ଯାଉ ମୋ ଆଖି । ତମେ ଯାଉଛ, ମୁଁ ଆଉ କିଏ ଭାବି—
ନାଲୁ—ରୁ କୁଆଡ଼େ ଯାଉଛୁ କି ?
ଚମ୍ପୀ—ତମରି ଘରଆଡ଼େ ଯାଉଥିଲି ପରା ! ତମରି ପାଖକୁ ଦି'ଥର ଯାଇ ଫେରିଲିଣି—ଏବେ ଫେରେ ସାନମାଆ ପଠେଇଲେ । କହିଲେ—ରୁ ଯାଆ ଦେଖିଆସିବୁ, ମିଶ୍ରେ ନେଉଟିବେଣି । ତେମେ କୁଆଡ଼େ ଯାଇଥିଲ ମ ସାଆନ୍ତେ ? ଘରେ ତ ନଥିଲ ?

ନାଲ୍ଲ—ମୁଁ ଟିକଏ ନନ୍ଦୀପୁର ହାଟକୁ ଯାଇଥିଲି । ବାଳ, ଏଇଲେ ଯେମିତି ଘରକୁ ଫେରିଚି, ନାନା କହିଲେ—ତତେ ଚମ୍ପା ଖୋଜି ଯାଇଚି, ସାହୁକାର-ଘର-ଯାନବୋହୂ କାନ୍ଦିକି ଡାକୁଚନ୍ତି—ରୁ ଚଞ୍ଚଳ ଯା' ! ମୁଁ ତ ଗୋଟେ ଗୋଟେ ବାହାରିଚି ! କଅଣ—କଥା କଅଣ ଚମ୍ପା ?

ଚମ୍ପା—ଆଗୋ କଥା କଅଣ କି, ଦେଇକି ମୋର କାଲି ସଞ୍ଜରୁ ଜର ।

ନାଲ୍ଲ—ଜର ? ତଅପୋଇକି ? ବୈଦ୍ୟରତ୍ନଙ୍କୁ ଖବର ଦେଇଚ ? ନଇଲେ ମୁଁ ଯାଉଚି । (ଯାଉଥିଲେ, ଫେରି)

ଚମ୍ପା—ବଇଦ ଆସିଥିଲେ, ଓଷଦ କଅଣ ଦେଇଯାଇଚନ୍ତି, ହେଲେ ସେ କଅଣ ଦହ-ଜର ଯେ ଯା'ନ୍ତେ, ଓଷଦରେ ଭଲହେଇଯିବ ?

ନାଲ୍ଲ—ମାନେ ?

ଚମ୍ପା—ମନ-ଜର ମିଶ୍ର ସାଆନ୍ତେ, ମନ-ଜର ! ସିଇମାନେ ବୋଇତ ଅନୁକୂଳ କରି ଗଲାଦିନୁ ଦେଇ ମୋର ଝୁରି ଝୁରି କଣ୍ଠାସାର ହେଇଥିଲା । ତେଣିକି ଫେର୍ ସୁମନ୍ତ ସାଆନ୍ତେ ଗଲେ ବାହାରି ଯେ···

ନାଲ୍ଲ—ସତ କଥା ଏକା ଚମ୍ପା ! ମୁଁ ବ ସେ କଥା ଶୁଣିଲାଦିନୁ ମୋ ମନଟା କେମିତି ବଗିଡ଼ିଯାଇଚି । ଏତେ ଭଲ ପିଲାଟା—ସିଇ-ସିଉଜ ବୋଲି ପାଣି ପିଉ ନ ଥିଲା, ପର-ଘରକୁ ଆପଣାର କରିଥିଲା—ସେ ସେ କାହିଁକି ଏମିତି···

ଚମ୍ପା—ସବୁ ଦେଇର କପାଳ ସାନ୍ତେ, ଦେଇର କପାଳ !

ନାଲ୍ଲ—ସାହୁକାରମାନେ ଏତେ ବିଶ୍ୱାସ କରି ତାକୁ ଘରେ ଛାଡ଼ିଯାଇଥିଲେ —କେତେ ବଡ଼ ଆଶା ମନରେ ପୋଷିଥିଲେ । ଶେଷକୁ ସେ ସେ ସେସବୁ ଏଡ଼ିଦେଇ—ବାଃ ସେ ତ ସେମିତି ପିଲା ନୁହେଁ !

ଚମ୍ପା—କହିଲି ପରା କପାଳ ! କପାଳ ଓଲଟିଗଲେ ସବୁ ଓଲଟେ । ନଇଲେ ସୁମନ୍ତ ସା'ନ୍ତେ ଗଲା ପରଠୁଁ ଏଣେ ଭାଉଜଯାକ ହେଲେଣି ବଇରି !!

ନାଲ୍ଲ—ବଇରୀ ?

ଚମ୍ପା—ହଁ ଗୋ ବଇରି ! ପିଲାଟିଃ ନା—କେତେ ସହିବ କହିଲ ?

ନାଲୁ—ସେ କଥା ସତ ଚମ୍ପି ! ବାଙ୍କା ସାଉକଯାକ ତ ଏତେ ଗେହ୍ଲା କରିଥିଲେ—ଏତେ ସେବା ଯତ୍ନ···

ଚମ୍ପୀ—ଆଉ ସେବା ନାହିଁ କି ଯତନ ନାହିଁ ସାଆନ୍ତେ—ଯେତିକି ଶୁଣିଥିଲି ସେତିକି । ଏକା ସାନମା'ଙ୍କୁ ଛାଡ଼ିଦେଲେ ସଭିଏଁ ଏକା-ଖାଡ଼ର ପାପ ! ଏତେ ସ୍ୱାନମାନ ହତାଦର ଯେ—କଅଣ କହିବ ସେଗୁଡ଼ାକ !

ନାଲୁ—ଏମିତି କାହିଁକି ହେଲା ଚମ୍ପୀ ?

ଚମ୍ପୀ—ଆଗୋ କଅଣ କହିବ—ସେଇ ରଣ୍ଡୀ ବ୍ରାହ୍ମଣୀଟା କଥାରେ ପଡ଼ି···

ନାଲୁ—କୋଉ ବ୍ରାହ୍ମଣୀ ଚମ୍ପୀ ? ଓ—ଆମ ସାଇ ଖୁଡ଼ୀ କଥା କହୁଚୁ କିଲୋ ?

ଚମ୍ପୀ—ହଁ ଗୋ, ସେଇ ଖୁଡ଼ୀ ତମର । ଆହା ହା—ଯୋଉ ଖୁଡ଼ୀ ସାଆନ୍ତେ ! ତୁଣ୍ଡରେ ଗୋବିନ୍ଦ—ପେଟରେ ଛନ୍ଦ । ଖାଉନ୍ଦମାନେ କେହି ଘରେ ନ ଥିଲାରୁ ସବୁବେଳେ ତ ମାଆମାନଙ୍କୁ ମୋଟ ଦେଇଟା ନାଆଁରେ ଶିଖେଇ ଶିଖେଇ ତତେଇ ସାରିଲାଣି ।

ନାଲୁ—ହେଲେ ତାର ସ୍ୱାର୍ଥ କଅଣ ?

ଚମ୍ପୀ—ଆଗୋ ସାଉକାର-ଘର ସୁନା ମହୁଡ଼ରେ ଭିକ ବାଢ଼ନ୍ତି—ସେ ରଣ୍ଡୀ କ'ଣ ଜାଣେନାହିଁ ? ଏମିତି ବୋହୂମାନଙ୍କୁ ହାତକଲେ ସବୁ ବୋହିବ, ସବୁ ପାଇବ ।

ନାଲୁ—ହଁ, ତା ଗୁଣ ମତେ ଜଣାଅଛି ଚମ୍ପି ! ଆଚ୍ଛା, ସାଉକମାନେ କ'ଣ କେହି ତଅପୋଇର ତତ୍ତ୍ୱ ନେଉନାହାନ୍ତି ?

ଚମ୍ପୀ—ଖାଲି ଉପରମୁହଁରେ ସା'ନ୍ତେ—ନୂପରମୁହଁରେ । ନଇଲେ ଦେଉର ଛୁଇ ପଇଲେ ତାଙ୍କ ନାହିଁ ଡେରିଚ । ଏକା ସାନସାଉକଙ୍କୁ ମୋର ଛାଡ଼ିଦେଲେ ସଭିଏଁ ତ···

ନାଲୁ—ସାନସାଉକ ସାକ୍ଷାତ୍ ଲକ୍ଷ୍ମୀ ଚମ୍ପି—ସାକ୍ଷାତ୍ ଲକ୍ଷ୍ମୀ ।

ଚମ୍ପୀ—ମୁଁ ଯାଉଚି ମିତ୍ର ସାଆନ୍ତେ ! ସାନମାଆ ଖୋଜୁଥିବେ ।

(ଫେରିଯାଉଥିଲା)

ନାଲୁ—ଆଲୋ ଏ ଚମ୍ପି ! ସାନଖୁଡ଼ିକ ମତେ କାହିଁକି ଖୋଜୁଥିଲେ ତ କହିଲୁ ନାହିଁ ?

ଚମ୍ପୀ—ପୋଡ଼ାଯାଉ ମୋ ମନ ! ହଁ, ସାନମାଆ କହିଲେ—ମିଶ୍ରଙ୍କୁ ଟିକିଏ ନେହୁରା ହୋଇ କହିବୁ, ଟିକିଏ ବଦରଗଠିକ ଯାଇ···ତମେ ବଦରଗଠିକ ଯାଉଚ କି ସାଆନ୍ତେ ?

ନାଲୁ—ନ ଯାଉଥିଲେ ଯିବ ନାହିଁ ? କଅଣ କାମଟା କହ ?

ଚମ୍ପୀ—ସାନମା’ କହିଲେ ବଦରଗଠିକ ଯାଇ ଦାସ ମଉସାଙ୍କୁ ଟିକିଏ କହି-ଆସିଲେ ସବୁ କଥା—ଘରର ହାଲ୍‌ଚାଲ୍—ଦେଇଙ୍କ ଜର ହବା କଥା—ସବୁ ।

ନାଲୁ—ଏଇ କଥା ? ଏଥିପାଇଁ ଗୋଟାଏ ନେହୁରା କଅଣ ଚମ୍ପି ! ମୋର କଅଣ ଏଇଟା କାମ ନୁହେଁ ? ସାନଖୁଡ଼ିଙ୍କୁ କହିବୁ—ତଅପୋଇ କଅଣ ମୋର ଭଉଣୀ ନୁହେ ? ସେ ଭାବନେ ନାହିଁ, ମୁଁ ନିଶ୍ଚେ ଯାଇ ଦାସ ମହାରଣାଙ୍କୁ ଖବର କରିବି ।

ଚମ୍ପୀ—ସବୁ କଥା ଟିକିଏ ତାଙ୍କୁ କହିବ, ତାଙ୍କୁ ସାଙ୍ଗରେ ନାଇଁ ତ ନେଇଆସିବ—ହେଲା ?

ନାଲୁ—ହଉ ! ଆଚ୍ଛା ଚମ୍ପି ! ତୁମନ୍ତ ଏମିତ ଚାଲିଯିବା କଥା ଦାସ ମହାରଣା ଜାଣିଚନ୍ତି ?

ଚମ୍ପୀ—କେଜାଣି—ଜାଣିଥିବେ କି ନାହିଁ । ବାକି ପୋଡ଼ାଗଲା ଢଅଣରେ ଆଉ ସୁଆଦ ଥାଏ ସାଆନ୍ତେ ? ମୁଁ ଯାଉଚି—ଦେଇ ମୋର ଦେହ-ଦୁଃଖରେ ପଡ଼ିଚି, ମନ ମୋର କଅଣ କୋଉଠି ଲାଗୁଚି ? ମୁଁ ଯାଉଚି ।

ନାଲୁ—ହଉ ତୁ ଯା’ ! ମୁଁ ଏଇ ସଞ୍ଜ ପୁଚ୍ଛା ଯାଇ ମହାରଣାଙ୍କୁ ଖବର କରୁଚି ।

(ଦୁହେଁ ଦୁଇଆଡ଼େ ଚାଲିଗଲେ ।)

## ସପ୍ତମ ଦୃଶ୍ୟ

[ ତାମ୍ରଲିପ୍ତ—ସୁନାଗପୁର ଗ୍ରାମ—ରାଧାର ଶୟନକକ୍ଷ—ରୋଗଶଯ୍ୟାରେ ରାଧା—ପାଖରେ ବସିଛ ସୁମନ୍ତ—ଏପଟିଏ ଜଳୁଛ—ମୁଣ୍ଡ ଉପର ଝରକାଟି ବନ୍ଦ ଅଛି । ]

ସୁମନ୍ତ—(ଉତ୍ତେଜିତ ଭାବରେ) ସେ ତମର ଭାଇ ? ସତ କହୁଛ ରାଧା, ସେ ତମର ଭାଇ ?

ରାଧା—ଏକା ମାଆ ପେଟର ଭାଇଭଉଣୀ ଆମେ ଦୁହେଁ ।

ସୁମନ୍ତ—ରାଧା !!

ରାଧା—ସେଇ ଭାଇକ ମୋର ପ୍ରେମିକ ଭାବି ଅକାରଣ ସନ୍ଦେହରେ ମତେ ଛାଡ଼ି ଚାଲିଗଲ ତେମେ ।

ସୁମନ୍ତ—ସ.ଇଥିଲି ରାଧା ! ଅନେକ ସମୟରେ ତମର ଝରକାରେ ବସି ଭାବନା, ରହି ରହି ଆନମନା ହବା, ରାତ୍ର-ଅନ୍ଧାରରେ ଲୁଚି ଲୁଚି ବଗିଚା ଭିତରେ ତମର ଭାଇଙ୍କ ସାଙ୍ଗରେ ଦେଖା—ଏସବୁର କାରଣ —ଏସବୁର ରହସ୍ୟ ଯେତେବେଳେ···

ରାଧା—ସେ ସବୁ ଯେ ତମ ମୋ ଭିତରେ ଗୋଟିଏ ବାଧାର ପାଚେର ଛିଡ଼ା କରିଦେବ, ସେ କଥା ମୁଁ ଭାବିପାରି ନ ଥିଲି ସୁମନ୍ତ ! ମୋର ସେ ଭୁଲ ଯେତେବେଳେ ମୁଁ ବୁଝିପାରିଲି, ସେତେବେଳେ ତେମେ ଯାଇ କୋଉଠି—ଆଉ ମୁଁ କୋଉଠି ।

ସୁମନ୍ତ—ଭୁଲ ମୋର ରାଧା ! ତୁମକୁ କିଛି ନ ପଚାରି, କିଛି ନବୁଝି ହଠାତ୍···

ରାଧା—ଛାଡ଼ ସେ କଥା ! ଆଜ ତେମେ ମୋ ପାଖକୁ ଫେରିଆସିଛ—ହେଲେ ବଡ଼ ଅବେଳାରେ ! ଦନ ମୋର ସରିଆସିଲାଣି ସୁମନ୍ତ !

ସୁମନ୍ତ—ଏ କଥା କାହିଁକି କହୁଛ ରାଧା ? ଏଇଥିପାଇଁ କଅଣ ଏତେ ବାଟ ଧାଇଁଆସିଛି ମୋର ସେଇ ଭୁଲର ପ୍ରାୟଶ୍ଚିତ କରିବାକୁ ?

ରାଧା—(କାଶିଲେ) ଓଃ, ଓଃ,—ଟିକଏ ପାଣି—ପାଣି ଦଅ ସୁମନ୍ତ !

(ସୁମନ୍ତ ରାଧାକୁ ପାଣି ପିଆଇଲେ ।)

ରାଧା—(କିଛି କ୍ଷଣ ପରେ) ପ୍ରାୟଶ୍ଚିତ୍ତ ! (ମ୍ଳାନ ହସ ହସି) କ'ଣ ପ୍ରାୟଶ୍ଚିତ୍ତ କରିବ ସୁମନ୍ତ ?

ସୁମନ୍ତ—ତା' କଅଣ ତମେ ଜାଣନା ? ଆମ ଦୁହିଁଙ୍କର କେତେ କଳ୍ପନା—କେତେ ଆଶା···

ରାଧା—ସେ ଆଶା ପୂରଣ ହେବାର ଆଉ ବେଳ ନାହିଁ ସୁମନ୍ତ । (କାଶିଲେ) ଉଃ—ଉଃ—ଉଃ ।

ସୁମନ୍ତ—(ଧରପକେଇ) ଚୁପ୍ ହୋଇ ଟିକିଏ ଶୋଇପଡ଼ ରାଧା, ମୋ କଥା ମାନ ।

(ରାଧା କିଛି କ୍ଷଣ ନିସ୍ତେଜ ହୋଇ ପଡ଼ିରହିଲେ ।)

ରାଧା—ଶୁଣ ସୁମନ୍ତ !

ସୁମନ୍ତ—ଓଃ ! ନା, ମୁଁ କିଛି ଶୁଣିବି ନାହିଁ । ତେମେ ଚୁପ୍ ହୋଇ ଟିକିଏ ଶୋଇପଡ଼ିଲ ଆଗେ !

ରାଧା—ବାଧା ଦିଅନା ସୁମନ୍ତ—ଆଉ ବେଳ ନାହିଁ—ଯା' କହିବି ବୋଲି ତମକୁ ଏତେ ବାଟରୁ ଡକେଇ ଆଣିଚି, ଏଇନେ ଭୁଲିଗଲେ ସେସବୁ ଅକୁହା ରହିଯିବ ।

ସୁମନ୍ତ—କଅଣ କହିବ ? ତମର ସେଇ ଭାଇଙ୍କ କଥା ?

ରାଧା—ହଁ ଶୁଣ, ବାପା-ମାଆଙ୍କର ଆମେ ଦିଓଟି ପୁଅ ଝିଅ—ଦିହେଁ ଦିହିଁଙ୍କି କ୍ଷଣେ ନ ଦେଖିଲେ ପାଗଳ । ହେଲେ ଆମ ଦିହିଁଙ୍କର ପ୍ରକୃତିରେ ମେଳ ନଥିଲା । ସେ ଥିଲେ ହୁଣ୍ଡା ଗୁଣ୍ଡା, ଆଉ ମୁଁ ଥିଲି ଧୀର । ଆମର ବାଡ଼-ଦୁଆରକୁ ଲାଗି ନଈ—ନଈଦାଢ଼ରେ ନିତି ସଞ୍ଜବେଳେ ଭାଇ ମୋର ତେଣେ ତେଣେ ବୁଲନ୍ତି ।

ସୁମନ୍ତ—ତମର ବାଡ଼-ଦୁଆରକୁ ଲାଗି ନଈ ? କାହିଁ ଏଠି ତ···

ରାଧା—ଏଠି ତ ଆମ ଘର ନଥିଲା ! ବାପା ମରିଗଲା ପରେ ମାଆ ମତେ ନେଇ ଏଠିକି ଉଠିଆସିଲା (କାଶିଲେ) ଉଃ—ଉଃ—ଟିକିଏ ପାଣି ଦେଲ ।

(ସୁମନ୍ତ ଉଠି ପାଣି ଆଣି ପିଆଇଦେଲେ ଓ ପଙ୍ଖା କଲେ ।)

ସୁମନ୍ତ—ତୁମକୁ ତ କଷ୍ଟ ହେବ—କାହିଁକି ଶୁଣୁନା କହିଲ ?

(ରାଧା ସୁମନ୍ତ କୋଳରେ ମଥା ରଖି ଶୋଇପଡ଼ିଲେ—
କିଛି କ୍ଷଣ ପରେ ଅପର କକ୍ଷରୁ ମହେନ୍ଦ୍ର ରାୟ ପ୍ରବେଶ କଲେ । )

ମହେନ୍ଦ୍ର—(ନମ୍ର ସ୍ୱରରେ) ମାଆ ମୋର ଶୋଇପଡ଼ିଛି ସୁମନ୍ତ ?

ସୁମନ୍ତ—ହଁ ।

ମହେନ୍ଦ୍ର—ଔଷଧ ଖାଇଚ ତ ?

ସୁମନ୍ତ—ହଁ, ଦେଇଥିଲି । ଆଚ୍ଛା ରାୟ ମହାଶୟ, ବୈଦ୍ୟରାଜ କଅଣ କହୁଚନ୍ତି ? ଚଞ୍ଚଳ ଭଲହୋଇଯିବ ତ ?

ମହେନ୍ଦ୍ର—ବୈଦ୍ୟରାଜ ତ ବରାବର ଆଶା ଦେଇ ଆସିଚନ୍ତି···ହେଲେ ରାଧାର ଦେହ-ରୋଗଠୁ ମନ-ରୋଗ ଯେ ବେଶି ସାଙ୍ଘାତିକ !

ସୁମନ୍ତ—ହୁଁ ।

ମହେନ୍ଦ୍ର—(ବସି) ସେଥିପାଇଁ ତ ବାକଲରେ ଧାଇଁଯାଇଥିଲି ତମକୁ ଧରି-ଆଣିବାକୁ—ରାଧାର ହାତ-ଲେଖା ଯେନ । କେତେ ଦେଶ, କେତେ ସହର—ଗାଆଁ—ତୁମକୁ ଖୋଜି ନ ବୁଲିଚି !

ସୁମନ୍ତ—ମୁଁ ମୋର ଭୁଲ ବୁଝିପାରିଚି ରାୟ ମହାଶୟ !

ମହେନ୍ଦ୍ର—ମୁ ଜାଣିଥିଲି ତମେ ତୁମର ଭୁଲ ବୁଝିବ । ପୁଣି ତମର ରାଧା ପାଖକୁ ତେମେ ଫେରିଆସିବ ।

ସୁମନ୍ତ—ରାଧାର ମା'ଙ୍କର କାଳହବାର କେତେ ମାସ ହବ ଆଜକୁ ?

ମହେନ୍ଦ୍ର—ପାଞ୍ଚ ମାସ । ମୁଁ ତ ସେଇ ଖବର ପାଇ କଟକରୁ ଧାଇଁଆସିଲି । ବାପ ନଥିଲା ଝିଅ—ମାଆକୁ ହରେଇ ଅକୂଳରେ ଭାସିଲା ।

ସୁମନ୍ତ—ଆଚ୍ଛା, ଧନସମ୍ପତ୍ତି ଲୁଟିହବାର କାରଣ କଅଣ ?

ମହେନ୍ଦ୍ର—କେମିତି କହିବ ? ମୁଁ ତ ଏଠି ଆସି ସେ ବିପଦର କଥା ଶୁଣିଲି । ବଡ଼ ହତଭାଗ୍ୟ ଜୀବନ ତାର ସୁମନ୍ତ—ବଡ଼ ହତଭାଗ୍ୟ ଜୀବନ । ତମେ ଚାଲିଗଲ ପରେ ମନ ତାର ଜଳିବା ସାଙ୍ଗେ ସାଙ୍ଗେ ଦେହ ବି କ୍ରମେ କ୍ରମେ ଭାଙ୍ଗିପଡ଼ିଲା । ତା'ପରେ ଏଇସବୁ ଦୈବୀ-ଦଣ୍ଡ ତାକୁ ଏକାବେଳକେ···

( ଏହି ସମୟରେ ରାଧା ସ୍ୱପ୍ନାବେଶରେ କହିଉଠିଲା—"ଭାଇ—ଭାଇ !"
ମହେନ୍ଦ୍ର ଓ ସୁମନ୍ତ ଖଟ ପାଖକୁ ଧାଇଁଗଲେ ।)

ସୁମନ୍ତ—ରାଧା ! ରାଧା !

ମହେନ୍ଦ୍ର—ସ୍ୱପ୍ନ ଦେଖୁଚି ସୁମନ୍ତ ! (ଚିନ୍ତିତମନେ) କଅଣ ଯେ ହେଲା ! ଘର ଲୁଟିହେବା ଦିନଠୁଁ ଶୁଭେନ୍ଦ୍ରର ବି ଦେଖାନାହିଁ ଆଉ ।

ସୁମନ୍ତ—ଶୁଭେନ୍ଦ୍ର ? ଓ, ରାଧାର ଭାଇ—ନା ?

ମହେନ୍ଦ୍ର—ହଁ, ରାଧାର ଭାଇ ଶୁଭେନ୍ଦ୍ର—ଯାହାଯୋଗୁଁ ତମ ଦିହିଁଙ୍କ ଭିତରେ ଗଢ଼ି ଉଠିଲା ଏତେ ବଡ଼ ସନ୍ଦେହର ପାଚେରି । ପରିବାରର ଲାଜ ବଞ୍ଚେଇବାକୁ ଯାଇ ରାଧା ବି ତମକୁ କିଛି କହିଲା ନାହିଁ ।

ସୁମନ୍ତ—ପରିବାରର ଲାଜ ?

ମହେନ୍ଦ୍ର—ହଁ, ରାଧାଟି ସିନା ପିଲାଦିନୁ ବଡ଼ ଧୀର, ହେଲେ ଶୁଭେନ୍ଦ୍ର ବଡ଼ ଉଦଣ୍ଡ ଆଉ ଉଚ୍ଛୃଙ୍ଖଳ । ସେଇ ପ୍ରକୃତି ତାକୁ ଭୁଲ ବାଟକୁ ଟାଣିନେଲା । ଶେଷରେ ଆଗ୍ରକାମୀ ଗ୍ରମେଣ୍ଟମାନଙ୍କ ସାଙ୍ଗରେ ମିଶି···

ସୁମନ୍ତ—ଗ୍ରମେଣ୍ଟମାନଙ୍କ ସାଙ୍ଗରେ !!

ମହେନ୍ଦ୍ର—ହଁ, ସେଇମାନଙ୍କ ସାଙ୍ଗରେ ମିଶି, ଘରଦ୍ୱାର ସବୁ ଛାଡ଼ି—ଏଇ ତାମ୍ରଲିପ୍ତଠୁଁ ଆରମ୍ଭ କରି ଚୂଡ଼ାମାନ୍, ପାରଥା, ଛତ୍ରୁଆଁ, ଲଛମନପୁର, ଧାମରା ଆଦି ଦକ୍ଷିଣ ଆଉ ପଶ୍ଚିମରେ ଯେତେ ଯେତେ ବନ୍ଦର ଅଛି—ସବୁଠି ଡୋଇତ ଲୁଟି ଅତ୍ୟାଚାର କରିବାରେ ଲାଗିଲା । ଏଣେ ମହାରାଜାଙ୍କ ଲୋକେ ତାକୁ ଧରିବାପାଇଁ ଛକିରହିଲେ ।

ସୁମନ୍ତ—ଧରିପାରିଲେ ନାହିଁ ?

ମହେନ୍ଦ୍ର—ନା । ବାଙ୍କା ଏତେ ଛକାପଞ୍ଝାରେ ଥାଇ ବି ସେ ତାର ଆଦରର ଭଉଣୀଟି କଥା ଭୁଲିପାରେ ନାହିଁ । ଦ'ଦିନେ, ଚାରିଦିନେ ରାଧାକୁ ବରାବର ଦେଖିବାକୁ ଆସେ । ଭାଇ-ଭଉଣୀଙ୍କ ଭିତରେ ଏମିତି ପ୍ରୀତି ଆଉ ନାହିଁ, ନ ଥିବ !

ସୁମନ୍ତ—ରାଧାର ବାପା କଅଣ ଏସବୁ···

ମହେନ୍ଦ୍ର—ଗୁଧାର ବାପା ଧନଞ୍ଜୟ, ଗଜପତି ମାହାରାଜାଙ୍କ ସୈନ୍ୟବାହିନୀରେ ଚାକିରି କରୁଥିଲେ । ହେଲେ ନିଜ ଜାତିର ଟେକ, ନିଜ ପରିବାରର ମର୍ଯ୍ୟାଦା ଏମିତି ହାନିହେବା ସାଙ୍ଗେ ସାଙ୍ଗେ ତାଙ୍କର ଦେହ ବି ଭାଙ୍ଗି-ଆସିଲା । ଅଳ୍ପଦିନ ପରେ ସଂସାରରୁ ସେ ବିଦାୟ ନେଇ ଚାଲିଗଲେ । ଧନଞ୍ଜୟ ଚାଲିଯିବା ପରେ ପରିବାରର ଦମ୍ଭ ଭାଙ୍ଗିଗଲା । ଗାଁ ଭିତରେ, ସମାଜ ଭିତରେ ନାନା କଥା ଉଠିଲା । ବିଧବା ସ୍ତ୍ରୀଲୋକ ସେସବୁ ସହି ନ ପାରି, ଗାଁ-ଘର ଛାଡ଼ି ଝିଅଟିକୁ ନେଇ ଏଇ ସୁନାରିପୁରକୁ ଉଠି ଆସିଲେ । ତମର ଅବଶ୍ୟ ଏସବୁ କଥା ଜାଣିବାର ଉପାୟ ନଥିଲା ।

ସୁମନ୍ତ—ନା, କୋଦଣ୍ଡପୁରର ଲୋକ; ସୁନାରିପୁର ଖବର ବା ଜାଣିବି କେମିତି ? ଗୁଧାକୁ ତ ମୁଁ ପ୍ରଥମେ ଦେଖେ ଆମର ଗାଁରେ—ଆପଣଙ୍କ ଘରେ ।

ମହେନ୍ଦ୍ର—ହଁ, ଠିକ୍ ମନେରଖିଚ—ପ୍ରଥମେ ପ୍ରାୟ ବର୍ଷେ କାଳ ସେ ଆମର ଘରେଇ ଥିଲା ।

ସୁମନ୍ତ—ସେତେବେଳେ ଆପଣଙ୍କ ମୁହଁରୁ ବି ଶୁଣିଚି—ଏମାନେ ସୁନାରିପୁରର ବାସିନ୍ଦା । ତା' ପରେ ଅବଶ୍ୟ ଅନେକ ଥର ମୁଁ ଏଠିକି ଆସିଚି; ମାତ୍ର ଏସବୁ ଇତିହାସ ଜାଣିବାର ମୋର ଉପାୟ ନ ଥିଲା ।

ମହେନ୍ଦ୍ର—ଯେତେବେଳେ ତମର ବାପ-ମା' ବଞ୍ଚିଥିଲେ, ମୁଁ ବି ପ୍ରସ୍ତାବ କରିଥିଲି । ଯେବେ ବାଲ୍ୟଚରିଟା ସେତେବେଳେ ହୋଇଯାଇଥାନ୍ତା···

ସୁମନ୍ତ—ଗତକଥା ଛାଡ଼ନ୍ତୁ, ପଦ୍ମଲେ ଗୁଧା କେମିତି ଭଲ ହବ···

ମହେନ୍ଦ୍ର—(ଦେବୀଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି) ମା ବର୍ଗଭୀମାଙ୍କ ଇଚ୍ଛା ।

ଗୁଧା—(ନିଦରୁ ଉଠି ଡାକଚି) ମହେନ୍ଦ୍ର ପିଉସା !

ମହେନ୍ଦ୍ର—ଉଠିଲୁଣି କି ମା ? (ଗୁଧା ପାଖକୁ ଯାଇ) କିଏ ଭଲଲାଗୁଚି ?

ଗୁଧା—ଆଚ୍ଛା, ମହେନ୍ଦ୍ର ପିଉସା, ତେମେ ଖାଲି ଯତ୍ନ କରୁଚ ମତେ ବଞ୍ଚେଇବାକୁ, ନୁହେଁ ? ବାକି, ମୁଁ ଯେ ଆଉ ବଞ୍ଚିବି ନାହିଁ—ଏଇ ସରଳ କଥାଟା ଜାଣିକି···

ମହେନ୍ଦ୍ର—(ବାଧାଦେଇ) ଦେଖ, ଭ୍ରୂ ଏଇ ପାଗଳାମି ଛାଡ଼ି ଚୁପ୍ ହୋଇ ଟିକଏ ଶୋଇଲୁ ମା !

ରାଧା—ଆଉ ନିଦ ଲାଗୁନାହିଁ । ଆଚ୍ଛା, ତେମେ କହୁଲ ପିଉସା···

ମହେନ୍ଦ୍ର—ତୋ ସାଙ୍ଗେ ମୁଁ ତର୍କ କରି ପାରିବ ନାହିଁ—ଭ୍ରୂ ଭ୍ରୂନହେଲୁ । ସୁମନ୍ତ ! ତେମେ ତ ବସିଚ, ମୁଁ ଆଉ ଘରେ ଟିକଏ ଗଡ଼ପଡ଼ ହୁଉଚ । ମୁଁ ଏଠି ରହିଲେ ମା'ର ମୋର କଥାର ସୁଅ ବନ୍ଦ ହବନାହିଁ ।

(ପ୍ରସ୍ଥାନ)

(ସୁମନ୍ତ ରାଧାର ଶେଯ ପାଖରେ ବସିଲେ ।)

ସୁମନ୍ତ—ରାଧା ! ଏତେ କଥା ତମେ ମୋ ପାଖରେ ଲୁଚେଇଥିଲ ?

ରାଧା—କୋଉ କଥା ? ଓ, ମହେନ୍ଦ୍ର ପିଉସାଙ୍କଠୁ ସବୁ ଶୁଣିସାରିଚ ତା' ହେଲେ ? ବାକ ପ୍ରେମର କଳଗୁଞ୍ଜନ ଭିତରେ ଗୋଟାଏ ଭୁଚ୍ଛ ଜୀବନର ଇତିହାସ—ଗୋଟାଏ ପରିବାରର ଲାଜ-ଦୁଃଖ—ଯାର ସ୍ଥାନ କାହିଁ, କହୁଲ ? ଯୋଉ ଲାଜ-ଦୁଃଖରେ ମୋର ମୁଣ୍ଡ ନଇଁପଡ଼ୁଥିଲା, ତମ ଆଗରେ କହିବ କହିବ ବୋଲି କହିପାରୁନଥିଲି ଭ୍ରୂମକୁ ।

ସୁମନ୍ତ—ତମେ ତ ସେଥିପାଇଁ ଦାୟୀ ନୁହଁ, ତେବେ କାହିଁକି···

(ଝରକାରେ କଏ ଧକ୍କା ମାରିଲାପରି ଶୁଣାଗଲା ।)

ରାଧା—(ଚମକି) କଏ !

(ସୁମନ୍ତ ଉଠିଯାଇ ଝରକା ଖୋଲି, ଦେଖି ପୁଣି ବନ୍ଦ କରିଦେଇ ଫେରିଆସିଲେ ।)

ସୁମନ୍ତ—କିଛି ନୁହେଁ—ବତାସର ଶବ୍ଦ । ଆଚ୍ଛା ରାଧା, ବର୍ଗୀମାଙ୍କ ଆଗରେ ଆମ ଦହିଁଙ୍କର ସେଇ ପ୍ରତିଜ୍ଞା କଥା ତମର ମନେଅଛି ?

ରାଧା—ମାଆଙ୍କ ଆଗରେ ସେଇ ପ୍ରତିଜ୍ଞା—"ଜୀବନ ଥିବାଯାଏ ଦହେଁ ଦହିଁଙ୍କୁ ଛାଡ଼ିବୁ ନାହିଁ ।" ଜାଣେ---ସେଇ ପ୍ରତିଜ୍ଞା ହେଉଚ ବନ୍ଧନ ଆଉ ବାଧା ।

ସୁମନ୍ତ—ବାଧା ?

ରାଧା—ହଁ—ତମରି···

( ରାଧା ଚେଷ୍ଟାକରି ଉଠି ବସିଲେ । )

ସୁମନ୍ତ—ମୋର !

ରାଧା—ଓଃ, ଝରକାଟା ଟିକଏ ଖୋଲଦଅ ସୁମନ୍ତ ! ଭାରି କଷ୍ଟ ହେଉଚି ।

(କାଶିଲେ)

( ସୁମନ୍ତ ଉଠିଯାଇ ଝରକାଟା ଖୋଲଦେଲେ । )

ରାଧା—( କିଛୁକ୍ଷଣ ପରେ ) ଆଃ—ଭାରି ଭଲ ଲାଗିଲା । ( ଝରକାବାଟେ ବାହାରକୁ ଚାହିଁ ) କି ସୁନ୍ଦର ରାତି !

ସୁମନ୍ତ—ଅନ୍ଧାରପକ୍ଷ ରାଧା !

ରାଧା—ହଉ ଅନ୍ଧାରପକ୍ଷ ! ଆକାଶରେ ଅଗଣିତ ତାରା—ନିଜ-ନିଜର ମନକଥା କୁହାକୁହି ହେଉଚନ୍ତି ଯେମିତି । ଆଚ୍ଛା ସୁମନ୍ତ, ଗୋଟିଏ ତାରା ଯେମିତି ଆଉ ଗୋଟିଏ ତାରାର ମନକଥା ଜାଣିଥିବ—ଗୋଟିଏ ଝିଅ ତ ଆଉ ଗୋଟିଏ ଝିଅର ମନକଥା ଜାଣିପାରିବା ବିଚିତ୍ର ନୁହେଁ ?

ସୁମନ୍ତ—(ଚମକି) ରାଧା !

ରାଧା—ସୁମନ୍ତ ! ମୋର ଗୋଟିଏ କଥା ରଖିବ ?

ସୁମନ୍ତ—ତମର କୋଉ କଥା କେବେ ରଖିନାହିଁ ରାଧା ?

ରାଧା—ଭୁଲ ବୁଝି, ମିଛ ସନ୍ଦେହ କରି ମତେ ଭୁଲିଯାଇଥିଲ—ହେଲେ—ମୋରି ପରି ଆଉ ଗୋଟିଏ ଝିଅ ଯେମିତି ଏ ଭୁଲ ବୁଝିବାର ଯନ୍ତ୍ରଣା ନପାଏ ।

ସୁମନ୍ତ—ଏ କଅଣ କହୁଚ ରାଧା ?

ରାଧା—ସେଇ ସାଧବଝିଅଟି କଥା କହୁଚି ।

ସୁମନ୍ତ—ତମେ କଅଣ ବିଶ୍ୱାସ କର ?

ରାଧା—(ବାଧାଦେଇ) ମୋର ବିଶ୍ୱାସ-ଅବିଶ୍ୱାସରେ ଯାଏ-ଆସେ କଅଣ ? ତାକୁ—

ସୁମନ୍ତ—ରାଧା !

ରାଧା—ମହେନ୍ଦ୍ର-ପିଉସାଙ୍କଠୁ ସବୁକଥା ଶୁଣିଚି । ସେ ଝିଅଟିର ପୂର୍ବ ବିଶ୍ୱାସକୁ ତମେ ଦଳିଦଅ ନାହିଁ ସୁମନ୍ତ !

ସୁମନ୍ତ—ତମେ ସବୁ କଥା ନଜାଣି···

ସାଧା—ସବୁ ଜାଣିବା କଅଣ ଦରକାର ସୁମନ୍ତ ! ମୁଁ ସେ ତ'ାର ଜାଣ ।
ମୋ ମନ କହୁଚ—ସେ ଦେଇଚ ତାକୁ ତା' ବୁକୁରେ ଥାନ, ପୂଜା
କରଚ ମନେ ମନେ—ସେ ପଜା ତମେ ଯେଜବ—ଏଇ ଆଶାରେ ।
ସେ ଆଶା ତାର ଭାଙ୍ଗିଦଅ ନାହିଁ ସୁମନ୍ତ ! ମୁଁ ତା'ହେଲେ—ଉଃ—
ଉଃ—(କାଶିଲେ) ।

ସୁମନ୍ତ—କଷ୍ଟ ହଉଚ··କାହିଁକ ଏତେ ଗପୁଚ କହଲ ?

ସାଧା—ସୁମନ୍ତ !

ସୁମନ୍ତ—କଅଣ ସାଧା ?

(ଖୋଲା ଝରକାବାଟେ ଦେଖାଦେଲେ ଜଳଦସ୍ୟୁ ବେଶୀ ଶୁଭେନ୍ଦୁ—
ମୁହଁରୁ ମୁଖା ଖୋଲଦେଇ ଛିଡ଼ାହୋଇଥାନ୍ତି । ହାତରେ ଏକ
ବନ୍ଧୁକ, ମାତ୍ର ସୁମନ୍ତ ଆଉ ସାଧା ତାଙ୍କ ଉପସ୍ଥିତ ଜାଣିପାରନଥିଲେ ।)

ସାଧା—କହ, କଥା ଦଅ—ତା'ର ସେ ଆଶା ଭାଙ୍ଗିଦେବନାହିଁ !

ଶୁଭେନ୍ଦୁ—ସାଧା ! ସାଧା !!

( କକ୍ଷ ଭିତରେ ପ୍ରବେଶ କଲେ । ସାଧା 'ଭାଇ' 'ଭାଇ' ଡାକ
ରୋଗଶଯ୍ୟା ଛାଡ଼ି ଧାଇଁଗଲେ; ମାତ୍ର ଅତ୍ୟଧିକ ଉତ୍ତେଜନାବଶତଃ
ତଳେ ପଡ଼ିଯିବା ପୂର୍ବରୁ ଶୁଭେନ୍ଦୁ ଧରିପକାଇଲେ । ସାଧାକୁ ଆଣି
ବିଛଣାରେ ଶୁଆଇ ଦେଇ ଛିଡ଼ା ହୋଇଗଲାବେଳକୁ ଦୃଷ୍ଟି ପଡ଼ିଗଲା
ସୁମନ୍ତ ଉପରେ । )

ଶୁଭେନ୍ଦୁ—କଏ ତୁ ? ସତ କହ, ନହେଲେ···

( ବନ୍ଧୁକ ଟେକଲେ )

ସୁମନ୍ତ—(ତରଳଭାବେ ) ମତେ ଗୁଳିକରି ମାରବ ଏସ୍ୱା ତ ?

( ମହେନ୍ଦ୍ର ଗସ୍ତ ବ୍ୟସ୍ତ ହୋଇ ପ୍ରବେଶକଲେ କହୁ କହୁ— )

ମହେନ୍ଦ୍ର—କଅଣ ହେଇଚ ସୁମନ୍ତ—କଅଣ ହେଇଚ ? କଏ ଶୁଭେନ୍ଦୁ !
ଆସିଚୁ ବାବା ?

ଶୁଭେନ୍ଦୁ—ଏଇ ତେବେ ସୁମନ୍ତ, ପିଉସା ? ସାଧାର ଅନ୍ତରରେ କଥାଁ
ଜାଳ—ମିଛ ସନ୍ଦେହରେ ତାକୁ ଛାଡ଼ି ଚାଲିଯାଇଥିଲି—ଯାହାଯୋଗୁଁ

ପ୍ରାଣର ଭଉଣୀ ମୋର ଆଜ···ଖିରୁ, ଦୁର୍ବଳ, ସନ୍ଦେହ—ଶାସ୍ତି ନେବାକୁ ପ୍ରସ୍ତୁତ ହୁଅ ।

( ବନ୍ଧୁକ ଉଠାଇ ଲକ୍ଷ୍ୟକଲେ । )

ମହେନ୍ଦ୍ର—ଶୁଭେନ୍ଦ୍ର ! ଶୁଭେନ୍ଦ୍ର !!

ଶୁଭେନ୍ଦ୍ର—ଛୁଡ଼ା ହ' ଗୁଡ଼ ପଚେଇ ମୋ ଆଗରେ ସୁମନ୍ତ ! ଏ ଦସ୍ୟୁର ଅନ୍ତରରେ ଦୟା ନାହିଁ, ମାୟା ନାହିଁ, କ୍ଷମା ନାହିଁ ।

ସୁମନ୍ତ—କ୍ଷମା ମୁଁ ଭିକ୍ଷା କରେନା ।

ଶୁଭେନ୍ଦ୍ର—ହସି ହସି ମରିବାର ସାହାସ ତୋର ଅଛୁ ?

ସୁମନ୍ତ—ପରୀକ୍ଷା କରି ଦେଖ ଭାଇ !

ଶୁଭେନ୍ଦ୍ର—ଏଁ, ଭାଇ !

ସୁମନ୍ତ—ହଁ, ତମେ କଅଣ ମୋର ଭାଇ ନୁହଁ ?

ଶୁଭେନ୍ଦ୍ର—ଏ କଅଣ ହେଲା ! ସବୁ ଯେ ପଣ୍ଡ ହେଲା ! ଶାସ୍ତି ଦେବାର ଏତେ ଆୟୋଜନ ସବୁ ଯେ ତୋର ଏଇ କଥା ପଦକରେ କାହିଁ ଆକାଶରେ ମିଶିଗଲା ସୁମନ୍ତ ! ମୁଁ ଗୋଟାଏ ଜଳଦସ୍ୟୁ—ଦୁନିଆ ମତେ ଦୂରରୁ ଦେଖି ଅଭିଶାପ ଦିଏ—ସମାଜ ମୋର ଗୁଳିପଡ଼ିଲେ ଚମକି ଉଠେ । ହେଲେ ତୁ'ତ ମୋତେ ଡରିଲୁ ନାହିଁ—ମୋ ହାତରେ ଅସ୍ତ୍ର ଦେଖି ଚମକି ଉଠିଲୁ ନାହିଁ ? ନିର୍ଭୀକ ନିଶ୍ଚିନ୍ତ ମନରେ ମୋ ଆଗରେ ଛିଡ଼ାହୋଇ ମତେ ଭାଇ ବୋଲି ଡାକିପାରିଲୁ ? ଏ ସ୍ୱେରଚାର ଆଖିରେ ଲୁହ ଭରି ଦେଇପାରିଲୁ ? ତୁ କିଏ ? କିଏ ତୁ ?

ସୁମନ୍ତ—ମୁଁ ତମର ସାନଭାଇ—ସୁମନ୍ତ !

ଶୁଭେନ୍ଦ୍ର—ହଁ, ହଁ, ତୁ ମୋର ଭାଇ—ମୋର ଆଦରର ସାନଭାଇ, ନା—ନା—ଖାଲି ଭାଇ ତ ନୁହଁ—ତୁ ମୋର ପ୍ରାଣର ଭଉଣୀ ସୁଧାର ପ୍ରିୟ—ସୁଧାର ସାଥୀ—ସୁଧାର ଦେବତା । ଆ' ସୁମନ୍ତ ! ଆ' ଭାଇ !

( ସୁମନ୍ତଙ୍କୁ ଆଲିଙ୍ଗନ କଲେ । )

ଆଜି କି ଆନନ୍ଦ ମହେନ୍ଦ୍ର-ପିଉସା···ଆଜି କି ଆନନ୍ଦ ! ଏ ସ୍ୱେରଣୀର ପ୍ରାଣରେ ଆଜି ଆନନ୍ଦର ଢେଉ ଉଠୁଚି । ମା' ବାବା ସ୍ୱର୍ଗରେ ଥାଇ ହସିଉଠୁଛନ୍ତି—ଜୀବନର ସ୍ୱପ୍ନ ତାଙ୍କର ସଫଳ ହୋଇଚି । ରାଧା ତାର ସୁମନ୍ତକୁ ଫେରପାଇଚି—ଶୁଭେନ୍ଦ୍ର ଗୋଟିଏ ଭାଇ ପାଇଚି—ସାଥୀ ପାଇଚି—ସାଗର ଲୁଣ୍ଠନ କରି ମାଣିକ୍ୟ ପାଇଚି ।

ରାଧା—ଭାଇ ! ଭାଇ !

ଶୁଭେନ୍ଦ୍ର—ରାଧା ! ରାଧା ! ପ୍ରାଣର ଭଉଣୀ ମୋର ।

ସୁମନ୍ତ—ରାଧା ! ରାଧା !

( ସମସ୍ତେ ଧାଇଁଗଲେ ରାଧାର ଶଯ୍ୟାପାଖକୁ । )

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ସୁଦୂର 'ବଲି' ଦ୍ୱୀପ । ଗୋଟିଏ ହିନ୍ଦୁ-ମନ୍ଦିର ସମ୍ମୁଖରେ କିଛି ଉନ୍ମୁକ୍ତ ସ୍ଥାନ; ଲୋକ-ବସତିର ଖୁବ୍ ନିକଟରେ ଥିବାରୁ ବାଣିଜ୍ୟ-କାରବାର ଲାଗି ଉପଯୁକ୍ତ; ସେଇଠି ବସିଛନ୍ତି ଆମର ସାଧବପୁଏ---କୁଳ, ଗୁଜ, ବ୍ରଜ, ବଧୂ, ଶଶୀ ଇତ୍ୟାଦି ସାତ ଭାଇ—ଆଉ ତାଙ୍କର କେତେକ ଅନୁଚର-- ପଣ୍ୟ-ଦ୍ରବ୍ୟର ସମ୍ଭାର ମେଲି । ଲୋକେ ଆସୁଛନ୍ତି—ଯାଉଛନ୍ତି । କିଏ କିଣୁଛନ୍ତି, କିଏ ବା ଖାଲି ଦେଖି ଦେଖି ଫେରିଯାଉଛନ୍ତି, କିଏ ବା ସେ ଆଡ଼କୁ ନ ଗୁହିଁ ସିଧା ମନ୍ଦିର ଭିତରକୁ ପଶିଯାଉଛନ୍ତି, କିଣା-ବିକା ସବୁ 'ପଣ୍ୟ-ବିନିମୟ' ସୂତ୍ରରେ ଗ୍ଲୁଲିଚି ।

କେତେ ଜାତିର, କେତେ ଦେଶର, କେତେ ଧର୍ମର ଲୋକ ଦେଖିବାକୁ ମିଳୁଛନ୍ତି । ତାଙ୍କ ଭିତରେ ବି ଅଛନ୍ତି ଆମର ଉତ୍କଳବାସୀ---ଅବଶ୍ୟ ସେମାନଙ୍କୁ ଓଡ଼ିଆ ବୋଲି ଚିହ୍ନିବା ଟିକିଏ କଷ୍ଟ ।

ଦ୍ୱୀପବାସୀ ବାଦ୍ୟକାର ଓ ନୃତ୍ୟକାରୀଦଳ ପ୍ରବେଶ କରି ପ୍ରଥମେ ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରଣାମକଲେ ଓ ତଦ୍ଦେଶୀୟ ବାଦ୍ୟ (ଗାମେଲାନ୍) ସହଯୋଗରେ 'ଦଶାବତାର' ନୃତ୍ୟ ଆରମ୍ଭ ହେଲା । ଉପସ୍ଥିତ ଜନତା ନୃତ୍ୟ ଦେଖୁଥାଆନ୍ତି । ନୃତ୍ୟ ଶେଷରେ ନୃତ୍ୟକାରଦଳ ମନ୍ଦିର ମଧ୍ୟରେ ପ୍ରବେଶ କଲେ । ]

କୁଳ—ବଧୂ ! ଆଉ ସାମଗ୍ରୀ ତ କିଛି ନାହିଁ ?

ବଧୂ—ନା ଭାଇ, ପେଣୁ ଉପରୁ ଶକାସରିଚି; ବାକି ଏଇ ରେଜା ସାମଗ୍ରୀତକ ଥିଲା ।

କୁଳ—'ନଲୀ-ଝାଁନ' କିଛି ରଖିନା ଆଉ ?

ରାଜ—ନା ସ୍ୱର ! ତମେ ତ କହିଲ ନଳୀ-ଝୀନ ବଳିଦ୍ୱୀପରେ କଟିବ ନାହିଁ—ସେଥିପାଇଁ ସିଂହଳରେ ଯାହା କଟିଲା, ଜଟିଲା; ବାକିତକ ସେଇଠି ମହାଜନଙ୍କୁ ଦେଇ ଆସିଲେଇଁ ।

କୁଳ—ହଉ ଭଲକଲ; ତେବେ ଏଥର କେହ୍ନ କେହ୍ନ ନଳୀ-ଝୀନ ଏଠି ଲେଉଡ଼ୁଚନ୍ତି ବୋଲି ପଚାରୁଥିଲି ।

(ଏଇ ସମୟରେ ଜଣେ ବୁଢ଼ା ସାଧବଙ୍କ ଅନୁଚରମାନଙ୍କ ପାଖରେ କେତେଗୁଡ଼ାଏ ରଙ୍ଗ-ପଥରର ଶଙ୍ଖା ଦେଇ, ୨।୪ଟି ଚର୍ଜିତ ମାଟିହାଣ୍ଡି ଧରି ଚାଲିଯାଉଥିଲା । କୁଳଶେଖର ତାକୁ ହାତଠାରି ଡାକିଲେ ।)

କୁଳ—ତେମେ କଅଣ ଓଡ଼ିଆ ?

ବୃଦ୍ଧ—ହଁ ବାବା ! ଓଡ଼ିଆ—କଳିଙ୍ଗ । ଏଇ ମାଟିହାଣ୍ଡି ନବା କଥାରୁ ଜାଣିଲ କି ? ମାଟିହାଣ୍ଡି ଏଠି ଅପୂର୍ବ । ମୋର ମନେ ଅଛି ପିଲାଦିନ କଥା—ଏଠୁ ସବୁ ବୋଇତ-ବେପାରୀ ଯାଇ ଆମ ଦେଶମାନଙ୍କରୁ ନଡ଼ିଆ ବଦଳରେ ମାଟିହାଣ୍ଡି ଘିଚଆସୁଥିଲେ । ବନ୍ଦରମାନଙ୍କରେ ସେତେବେଳେ ମାଟିହାଣ୍ଡି ଚାରିଆଡ଼ୁ ଆସି ପାହାଡ଼ ପ୍ରମାଣେ ଗଦା-ହଉଥିଲା । ଆମେ ପିଲାମାନେ ତା' ଭାଉ କଅଣ ବୁଝିବୁ ? ଆମ ଦେଶରେ ମାଟିହାଣ୍ଡିକି ପଚାରୁଚି କିଏ ? କୌତୁକରେ ଢେଲ ମାରି ହାଣ୍ଡି ସବୁ ଭାଙ୍ଗିଲାବେଳକୁ, ବଣିକମାନେ ବୋଇତ ଉପରୁ ନଡ଼ିଆ ଫିଙ୍ଗନ୍ତି—ଆମେ ସବୁ ନଡ଼ିଆ ଗୋଟେଇ ଘରକୁ ଯାଉଁ—ତାଙ୍କ ହାଣ୍ଡିତକ ରହିଯାଏ ।

କୁଳ—ହାଃ-ହାଃ-ହାଃ—ଏବେ ବି ସେମିତି ହଉଚି ଯେ । ଆଚ୍ଛା, ତେମେ କେତେଦିନ ଏଠି ରହିଲଣି ?

ବୃଦ୍ଧ—ଦ'କୋଡ଼ି ଦଶ ବର୍ଷ ହବ ବାପା !

ରାଜ—ତମ ନିବାସ କୋଉଠି ଥିଲା ?

ବୃଦ୍ଧ—ଥିଲା ମହାନଦୀ କୂଳରେ, ପଦ୍ମାବତୀ ଜାଣିବ ବାବା—ବୈଦ୍ୟେଶ୍ୱର ପଦ୍ମାବତୀ ?

କୁଳ—ସେ ତ ଗାଆଁ ନୁହେଁ—ସହର; ବଣିଜ କାରବାର ବି ସେଠି ଖୁବ୍ ।

ବୃଦ୍ଧ—ହଁ, ସେଇଠି ଆମ ଘର ଥିଲା ବାପା ! ଗାଁ-ଭୂଇଁରେ ତ ମୋର କେହି ନଥିଲେ ଖାଲବାକୁ । ଏଠି ବି କେହି ନାହିଁ; ବଅସ ତ ଆସି ସ୍ୱଶକୋଡ଼ ଦଅଣ ହେଲା···ଆଉ କେଇଟା ଦନ ବା ବଞ୍ଚିବ ? ଆଚ୍ଛା ବାପ, ଏବେ ପୁରସ୍ତମ ଦେବ ଗ୍ରଜୁତ୍ଵ କରୁଛନ୍ତି ନା ?

କୁଳ—ନା, ତାଙ୍କ ପୁଅ ପ୍ରତାପରୁଦ୍ର ଦେବ ।

(ଏଇ ସମୟରେ ଆଉ କେତେଗୁଡ଼ିଏ ଲୋକ କୋଳାହଳ କରି ପ୍ରବେଶ କଲେ ।)

ବୃଦ୍ଧ—ହେଇଟି, ଆଉରି କେତେ ଆମ ଦେଶଲୋକ—ଦେଖ, ଆସରେ ପିଲେ !

କୁଳ—ଏମାନଙ୍କ ଭିତରୁ କାହାକୁ କାହାକୁ ମୁଁ ଜାଣେ ।

ସମସ୍ତେ—ଜାଣ···ଜାଣ ?

ବଧୂ—(ଜଣକୁ ପଗ୍ଚରିଲେ) ତମେ ଓଡ଼ିଆ ?

ବୃଦ୍ଧ—ହାଃ—ହାଃ···ଏଠି ଓଡ଼ିଆ ବୋଇଲେ···'କ୍ଲିଙ୍ଗ' । ଯୋଉ ଓଡ଼ିଆମାନେ ଏଠି ଆସି ବସତି କରନ୍ତି, ସଭିଁଏ ସେଇ 'କ୍ଲିଙ୍ଗ' ବୋଲାନ୍ତି ବାପ !

କୁଳ—ଜାଣେ; ଏକା ଏଠି କାହିଁକି—ଯବ, ସୁମାତ୍ରା, ମଳକ୍କସ—ଏମିତ କି ବ୍ରହ୍ମଦେଶ ଆଦି ସବୁଠି ଏଇମିତି ! ଯା'ହଉ, ଓଡ଼ିଶା-କଳିଙ୍ଗ—ଏକା କଥା !

ରାଜ—(ଜଣକୁ) ଅଚ୍ଛା, ତମେ ଏଠିକି କେବଠୁ ଆସିଲଣି ଭାଇ ?

ପ୍ରଥମଲୋକ—ମୁଁ ଏଠିକି ଆସିବା ଗ୍ରରି ଛ' ବର୍ଷ ହେବ । ହେଲେ ଆମ ଅଜାଙ୍କ ଅମଳରୁ ଆମେ ଦେଶ ଛାଡ଼ିଲୁଣି । ଅଜା ଆମର ବଣିଜ କରିବାକୁ ଆସି ସିଂହଳରେ ବସବାସ କରି ରହିଲେ—ସେଇଠି ବାପାଙ୍କର ଜନ୍ମ । ଅଜାଙ୍କର କାଳହେଲା ପରେ ବାପା ଆମର କାମ୍ବୋଡ଼ିଆକୁ ଉଠିଆସିଲେ···ନିଜର ଖଣ୍ଡିଏ ବୋଇତ ତିଆରି କରି ଏଇ ବଳି, ଯବ, ସୁମାତ୍ରା ଏସବୁ ଦେଶମାନଙ୍କରେ ବଣିଜ କରିବାକୁ ଲାଗିଲେ । ବାକି, ଶାସ୍ତ୍ରବାକ୍ୟ କଅଣ ମିଛ ହବ, କହିଲ ? ତେମେ

ତ ସାଧବ···କୋଉ ବୋଇତର କୋଉ ହାଲ, ତମକୁ ତ ଜଣାଥିବ ?
ବାପାଙ୍କ ବୋଇତଟି ଥିଲା 'ମଳୁରୀ' ।

କୁଳ—'ମଳୁରୀ'ର ଲକ୍ଷଣ ତ ଭଲ ନୁହେଁ—ଶାସ୍ତ୍ର କହୁଚି ।

ପ୍ରଥମ ଲୋକ—ସେଥିପାଇଁ ପରା ଏ ବାଲି ଦ୍ୱୀପକୁ ଆସୁ ଆସୁ ଦରିଆ ମଝିରେ ସମାଧି ଗିଥିଲା ବୋଇତ । ମୁଁ ଭାସି ଭାସି ଆସି ଏଇଠି ଲାଗିଲି—ବାପାଙ୍କୁ ଆଉ ପାଇଲୁ ନାହିଁ ।

ବଧୂ—ଭାଇ, ସିଂହଳର ଓଡ଼ିଆ-ବସତି ବେଶି ଦିନର ନୁହେଁ···ନା ?

କୁଳ—କିଏ କହିଲା ? ଶୁଣାଯାଏ—ଯେତେବେଳେ ଦନ୍ତକୁମାର ଗୁହଦେବଙ୍କ ଦାନ୍ତ ଘେନି ସିଂହଳକୁ ଆସିଲେ—ସେତେବେଳେ ସେ ଆମର ତାମ୍ରଲିପ୍ତ ବନ୍ଦରଠି ବୋଇତ ଚଢ଼ିଥିଲେ—ଆଉ ସେ ବୋଇତ ଓଡ଼ିଆ ହାତରେ ତିଆରି—ତହିଁରେ ଓଡ଼ିଆ ବୋଇତିଆଳ, ମାଝୀ, ତଣ୍ଡେଲ—ସବୁ । ତା'ହେଲେ ଭାବିଲୁ ଦେଖି, କୋଉଦିନୁ ଓଡ଼ିଆମାନେ ସିଂହଳକୁ ଗତାଗତ ହେଉଚନ୍ତି !

(ଆଉ ଜଣେ ଲୋକ ହାତରେ ଗୁଡ଼ିଏ ପୋହଳା ଧରି ପ୍ରବେଶକଲା ।)

ଦ୍ୱିତୀୟ ଲୋକ—ସାଧବ କହେ ? ଆଠବାକ୍ସି ପୋହଳା ପାଇଁ କହିଥିଲ ପରା—ଏଇ ନିଅ ।

(ଗୁଡ଼ିଏ ପୋହଳା ଗଦେଇଦେଲା ।)

ବଧୂ—ଦିଅ-ଦିଅ ଭାଇ, ତଅପୋଇ କେତେକଣ କହୁଥିଲା ।

ଦ୍ୱିତୀୟ ଲୋକ—ତଅପୋଇ ?

କୁଳ—ସେ ଆମର ଅଲଅଳୀ ସାନଭଉଣୀ । ଏଇ ନିଅ ଭାଇ କିଛୁ ହାତୀ-ଦାନ୍ତ ।

(ହାତୀଦାନ୍ତ ଖଣ୍ଡେ ଦେଲେ)

ଦ୍ୱିତୀୟ ଲୋକ—(ଦାନ୍ତ ଫେରେଇ ଦେଇ) ନା—ନା—ମୋର ହାତୀଦାନ୍ତ ଲୋଡ଼ାନାହିଁ । ପୋହଳାତକ ତମ ସାନଭଉଣୀକ ଦିଅ—ହଇକହେ ସାଧବ ଭାଇ, ତମର ଭଉଣୀ ହେଲେ ମୋର କଅଣ ଭଉଣୀ ନୁହେଁ ? (ବୃଦ୍ଧକୁ) କହିଲ ମଉସା ?

ବୃଦ୍ଧ—ହଁ ରେ ପୁଅ ! ସାତ ସମୁଦ୍ର—ତେର ନଈ—ଏ ପାଖରେ ଆମେ କେଇଟା ପ୍ରାଣୀ, ଆର ପାଖରେ ଆମର କୋଟି କୋଟି ଭାଇଭଉଣୀ—ମନ ଟାଣେରେ, ମନ ଟାଣେ !

(ଏଇ ସମୟରେ ମନ୍ଦିର ଭିତରେ ଶଙ୍ଖ-ଘଣ୍ଟା ବାଜିଉଠିଲା ।)

ଦ୍ୱିତୀୟ ଲୋକ—ଆସ ଦେଉଳ ଭିତରକୁ ଯିବା—ସନ୍ଧ୍ୟା-ଆଳତି ଦେଖିବା ।

ବ୍ରଜ—ଏଇଟି ବୁଦ୍ଧ ମନ୍ଦିର ନା ?

ବୃଦ୍ଧ—ହଁ, ବିଷ୍ଣୁଙ୍କ ମନ୍ଦିର ବାପ ! ଆସ ଯିବା । ଆଳତି ଦେଖିବ ପରା, ଆସରେ ପିଲେ !

ଲୁଳ—ତମେମାନେ ସବୁ ଆଗରେ ଚାଲ । ଆମେ ଏଇ ସାମଗ୍ରୀତକ ପେଣ୍ଠକୁ ପଠେଇ ଦେଇ ଯାଉଚୁ । କଥା କଅଣ କି ମଉସା, ମୁଁ ସିନା ଆଗରୁ ଥରେ ବ'ଅର ବାପାଙ୍କ ସାଙ୍ଗରେ ଏଠିକି ଆସିଚି; ତେବେ ଏଇ ଭାଇମାନେ ମୋର ଏଥର ନୂଆ ହୋଇ ଆସିଚନ୍ତି କି ନା' !

ବୃଦ୍ଧା—ଭଲ କଥା ! ତାଙ୍କୁ ସବୁ ଟିକିଏ ଘୂରିଆଡ଼ ବୁଲେଇ ବୁଲେଇ ଦେଖେଇଦିଅ ବାପ ! ବୁଦ୍ଧ ମନ୍ଦିର ଦେଖିବେ—ବୌଦ୍ଧ ମଠ ସବୁ ଦେଖିବେ—ଏଠି ଆଉ ସେମିତି ଦେଖିବା ଚିଜ କଅଣ ଅଛି ? ହଉ, ଭାଇମାନଙ୍କୁ ନେଇ ଆସ ବାପ—ଆମେ ଯାଉଚୁ—ଆସରେ ପିଲେ !

(ସମସ୍ତେ କୋଳାହଳ କରି ମନ୍ଦିର ଭିତରକୁ ଚାଲିଗଲେ)

ବଧୂ—(ଅନୁଚରମାନଙ୍କୁ) ନିଅରେ, ଉଠାଅ ଏ ସବୁ—ପେଣ୍ଠରେ ପଇଠ କରିଦେବ ।

(ଅନୁଚରମାନେ ବୋଝ ଉଠେଇ ନେଇ ଚାଲିଗଲେ ।)

ରାଜ—ଆଉ ଭଲ ଲାଗୁନାହିଁ ଭାଇ ! ଏଥର ଦେଶକୁ ବାହୁଡ଼ିବା ।

କୂଳ—ଚିନ୍ତା ନାହିଁ ! ଆଜି ପେଣ୍ଠିକି ଚାଲ—ଜହଉଡିଙ୍କୁ ପସ୍ତର ଧନ-ଘଣ୍ଟ ଠିକଣା କରିବା । ପାଗ ଓଲଟିଲେ ଫେର୍ ବୋଇତ ମେଲିବା ଜଲ୍ଦି ଯେ ।

ବଧୂ—କେଇ ଦିନ ହବ ମୁଁ ଖାଲି ଡିଅପୋଇକ ସ୍ୱପ୍ନ ଦେଖୁଚି—ଝୁରି ଝୁରି କଣ୍ଟାସାର ହେଲିଣି । ମନରେ ସୁଖ ନାହିଁ—ଖାଇବା ପିଇବା

ଚୁଡ଼ଙ୍ଗଦେଇଲିଣି—ସବୁବେଳେ ଖାଲି କାନ୍ଦୁଛ । ପ୍ରାଣ ମୋର ଅଥୟ ହୋଇ ଉଠୁଛ ଭାଇ !

ରାଜ—ତୁ ସେସବୁ ଦୁଶ୍ଚିନ୍ତା କରୁଚୁ କାହିଁକି କହିଲୁ ବାପ ? ଭାଉଜମାନେ ତା'ର ଅଛନ୍ତି—ସୁମନ୍ତ ଅଛି ।

କୁଳ—ସେଇ ତାର ରକ୍ଷାକବଚ ଭାଇ—ସେଇ ତାର ରକ୍ଷାକବଚ । ସବୁ ଅମଙ୍ଗଳକୁ ଠେଲିଦେଇ, ସବୁ ଦୁଃଖକଷ୍ଟକୁ ଭୁଲେଇ ଦେଇ ସେ ଯେ ଆମର ଭଉଣୀ ମୁହଁରେ ଆଣିଦେଇଥିବ ହସ—ତା ମନରେ ଆଣି-ଦେଇଥିବ ଦମ୍ଭ । ମୁଁ ଯେମିତ ଆଖିଆଗରେ ଦେଖିପାରୁଚରେ—ଆଖି ଆଗରେ ଦେଖିପାରୁଚ ସେ ଛବି ! ନା—ନା, ସେସବୁ ଦୁର୍ଭାବନା କରନାରେ ବାପ—ଭଉଣୀର ଆମର ଅକଲ୍ୟାଣ ହବ—ଆମର ସୁନାର ସ୍ୱପ୍ନ ଚୂନା ହୋଇଯିବ !

ବ୍ରଜ—ଆଚ୍ଛା ଭାଇ ! ଦୈଣ୍ୟ ଆଉ ଷଷ୍ଠିସ୍ୱ ଭିତରେ···

କୁଳ—କଅଣ କହୁଚର ସମ୍ବନ୍ଧ ନା ? ହୁଏରେ ଭାଇ ହୁଏ—ଖୁବ୍ ଭଲ ଚଳେ । ଷଷ୍ଠିସ୍ୱପରେ ଝିଅ ଦେଲେ ଝିଅ ସୁଖୀ ହୁଏ । କହିଲୁ ଦେଖି, ସୁମନ୍ତକୁ ମୁଁ ପାଇଥିଲି ବୋଲି ସିନା ! ହାଃ ହାଃ ହାଃ—ଆସ, ଆସ··· ଆଳତି ଦର୍ଶନକୁ ଯିବା । (ସମସ୍ତେ ମନ୍ଦିର ଭିତରେ ପ୍ରବେଶ କଲେ ।)

## ଦ୍ୱିତୀୟ ଦୃଶ୍ୟ

[ ସାଧବଘର ବଗିଚା; ବୁଢ଼ା ସାଜୁକାରଙ୍କ ପ୍ରତିମୂର୍ତ୍ତି ପାଖରେ ସନ୍ଧ ଦେଇସାରି ତଥପୋଇ ବସି କାନ୍ଦୁଥିଲା । ତଥପୋଇର ପଦର ସେ ଚେହେରା ଆଉ ନାହିଁ—ସେ ବେଶଭୂଷା ନାହିଁ—ମନରେ ସେ ସରସତା ନାହିଁ, କି ଆଖିରେ ସେ ଜ୍ୟୋତି ନାହିଁ । ]

(ସୁଭଦ୍ରା ଡାକି ଡାକି ପ୍ରବେଶ କଲେ ।)

ସୁଭଦ୍ରା—କୁଆଡ଼େ ଗଲା ସେ ଟୋକୀ । (ଦେଖିପାରି) କି'ଲୋ ବଗିଚାବୁଲା ସରିନାହିଁ କି ?

ଚଅପୋଇ—(ଧୀରେ ମୁହଁ ଟେକି) ମୁଁ ତ ବଗିଚାରେ ବୁଲୁ ନଥିଲି ମହିଆଣୀ
ଖାଲି—ସଞ୍ଜ ଦବାକୁ ଆସିଥିଲି ।

ସୁଭଦ୍ରା—ଆହା ହା, ସଞ୍ଜଦେବାକୁ ଆସିଥିଲୁ—ସଞ୍ଜ ! ସଞ୍ଜ ଦବା
ବାହାନାରେ ବଗିଚା-ବୁଲା ନଷ୍ଟ ମତେ ଜଣାଅଛି ଲୋ—ଜଣାଅଛି !
ବାକି, ରଜନୀ ତ' ଆଜି ଜଗେଇଚନ୍ତି—ରଜନୀ ପାହିବ କେମିତି ?

(ଉଜ୍ଜ୍ୱଳାଙ୍କ ପ୍ରବେଶ)

ଉଜ୍ଜ୍ୱଳା—ସାନବୋଉ କଥା କହୁଚୁ କାଲେ ମହିଆଣୀ ? ଜର ନୁହେଁ ଯେ—
ସେ ଗୋଟାଏ 'ଚର' । କାମ ଭିତରେ ତ ଠାକୁରଘର ବାସନ ଦ'ଖଣ୍ଡ
ଝଟ ମାଜିଦିଏ । ନଇଲେ ତ ସବୁବେଳେ ନଣନ୍ଦ ସାଥିରେ ଧେଇ-ଧେଇ
ହଉଥାଏ, ତେବେ ସେଇତକ ଯୋଉଠୁଁ...

ଚଅପୋଇ—ମୁଁ ଯାଉଚି ବଡ଼ଖାଉଜ !' ଠାକୁର ଘର ବାସନତକ ସବୁ ମାଜି
ଦେବି । (ପ୍ରସ୍ଥାନ)

ସୁଭଦ୍ରା—ଦେଖିଲ ଅପା, ଦେଖିଲ ଟି ? ସାନବୋଉର କାମ କି ନା—
କେମିତି ଆଗଭର ହେଇ ଦଉଡ଼ିଗଲା । ଆଉ ମୁଁ କହିଲି—"ଚଅପୋଇ
ଲୋ ! ମୋ ପଲଙ୍କଟା ଟିକଏ ଝାଡ଼ିଦେଇ ଶେଯଟାକୁ ଟିକଏ ପାରିଦେ !"
—ନ ଝୁଙ୍କିଲା ! ହେଲେ ମୁଁ କଅଣ ଗ୍ରୁଡ଼ିବି କି ଅପା ? ତା'ର ହାତରେ
କରେଇବି...କରେଇବି ।

ଉଜ୍ଜ୍ୱଳା—କାଲି ସକାଳେ ଏବେ, ମୁଁ କହିଲି, 'ଚଅପୋଇ ଲୋ, ମୋ ମୁଣ୍ଡଟା
କଅଣ ହଉଚି—ଟିକଏ କ୍ଷୀରତକ ଆଉଟି ରଖିଦେଲୁ'— କହିଲା 'ମତେ
କଅଣ କ୍ଷୀର ଆଉଟି ଆସିବ ?'

ସୁଭଦ୍ରା—ନା—କାହିଁକି ଆସିବ—ଖାଲି ବସି ବସି ତେଣ୍ଡି ଆସିବ ।
ଦେଲନାହିଁ ଖଡ଼ମୁଷାରେ ପିଠି ସଲଖି ! ବନ୍ଦ କରି ଦଅମ' ଅପା—
ବନ୍ଦ କରିଦଅ—ଝଟ ଏ ଓଳି କଂସାଏ ସେ ଓଳି କଂସାଏ କ୍ଷୀର
ତେଣ୍ଡିବ—କିଆଁ ମ ?

ଉଜ୍ଜ୍ୱଳା—ଦେଉଚି ବନ୍ଦ କରି ମ । ବାକି ସାନବୋଉର ସେଥିପାଇଁ ଯୋଉ
ରାଗ—ଯୋଉ କଥା—ସତେ ଯେମିତି...

ସୁଭଦ୍ରା—ସେଇ ଏକା ଖାଉନ୍ଦାଣୀ—ଆମେ ସବୁ ଦାସୀ ପରବାସୀ ।

ଉଜ୍ଜ୍ୱଳା—ଯାହା କହିଲୁ ମଛିଆଣୀ ! ବାଳ ବ୍ରାହ୍ମଣୀ ନାକୀ ଆମର ଆଖି ଖୋଲିଦେଲେ ।

(ଠିକ୍ ଏଇ ସମୟରେ ଭିତରୁ ଚମ୍ପୀର କଥା ଶୁଣାଗଲା—)

ଚମ୍ପୀ—ଫୁଟିଯାଉ ସେ ଆଖି ! (ପ୍ରବେଶ କରି) ଆଗୋ, ସେଇ କାଳିଆ ଛତରା ମ । ମୁଁ କହିଲି—ମୁଁ ସାନମାଆଙ୍କ ପାଖରେ ଅଛୁ, ତୁ ଯା କ ବଡ଼ମା' ବଗିଚାଆଡ଼େ ଥିବେ, ଡାକଦବୁ ! ଆଗୋ, କୋଉଠୁ କଅଣ ଖୋଜକର ଗଲା—କହିଲା—ବଗିଚାରେ ନାହାନ୍ତି ତ ! ଫୁଟିଯାଉ ସେ ଆଖି !

ଉଜ୍ଜ୍ୱଳା—ମତେ କାହିଁକି ଖୋଜୁଥିଲୁ କଲେ ?

ଚମ୍ପୀ—ପିପିଲି କୋଠିରୁ କଏ ଜଣେ ଲୋକ ଆସିଚ—ମୁଁ କଅଣ ଜାଣେ କାହିଁକ ? ମୁଁ ଯାଉଚ, ତମେ ଆସ ଝଅଟ ।

(ଫେରଯାଉଥିଲା)

ଉଜ୍ଜ୍ୱଳା—ଶୁଣ ଚମ୍ପି ! ସେ ଲୋକ ଅଛି ନା ଗଲାଣି, ଦେଖି ଆସିଲୁ !

ଚମ୍ପୀ—ଆଉ ! ଡାଣ୍ଡଖଞ୍ଜାରୁ ବାରଖଞ୍ଜା—ବାରଖଞ୍ଜାରୁ ଦାଣ୍ଡଖଞ୍ଜା ଖାଲି ଦଉଡ଼ୁଥେବ ! ମୁଁ କାଳିଆକୁ ପଠେଇଦଉଚ ।

ସୁଭଦ୍ରା—କଲେ ! ଘର ମୁହଁ ପାଇଗଲୁଣି ?

ଉଜ୍ଜ୍ୱଳା—ଯା—ବାହାର ମୋ ଘରୁ !

ଚମ୍ପୀ—କଆଁ ମ···ବାହାରସିବ କଆଁ ? ମୁଁ ସେବ କରଚ ନା ନାସ୍ତି କରଚ । ପେଟକୁ ମୁଠେ ଦଉଥେଲ—ନ ଦବ । ମୁଁ ମୋ ଦେହକ ଗ୍ରୁଞ୍ଜ କୁଆଡ଼େ ଯିବ ? ଦେଇ ଶାଶୁଘରକୁ ଯିବ—ତେବେ ଯାଇ ଚମ୍ପୀ ଏ ଘରୁ ଗୋଡ଼ କାଢ଼ିବ । ସାଆନ୍ତମାନେ କହିଯାଇଚନ୍ତି 'ଚମ୍ପୀ, ଚଅପୋଇକ ଦେଖୁଥିବୁ ।'

ସୁଭଦ୍ରା—ଭୂନି ହ ! ବାହାର ଏଠୁ ।

ଚମ୍ପୀ—ସାଆନ୍ତମାନେ ମୋର ମଣିଷ ଜୁହନ୍ତି ଗୋ—ଠାକୁର···ଠାକୁର !

(ସାଆନ୍ତମାନଙ୍କ ଉଦ୍ଦେଶ୍ୟରେ ନମସ୍କାର କରି କରି ପ୍ରସ୍ଥାନ)

ସୁଭଦ୍ରା—କହୁଚ ପରା···ପୋଇଲୀଙ୍କ ମୁହଁ ଟାଣ !

ଉଜ୍ଜ୍ୱଳା—ସଭିଙ୍କର ମୁହଁ ଭାଙ୍ଗିଯିବ ଲୋ ଭାଙ୍ଗିଯିବ ! ଆମେ ଛ' ଛଅଟା ଜାଆ, ଯେବେ ଏକାଠି ହବା ଘଡ଼ିକରେ ସବୁ ଓଲଟିଯିବ !

ସୁଭଦ୍ରା—ଆଗୋ ଅପା, ଜାଣିଚ—ସାନବୋଉ ସ୍ୱାଭିତରେ ଦିନେ 'ଶାସନ-ସାଇ'ର ନାଲୁ ମିଶ୍ରଙ୍କୁ ଡକେଇ, ତାଙ୍କ ହାତରେ କଅଣ ସବୁ ଖବର ଦଉଥିଲା ସୁମନ୍ତ୍ର ପାଖକୁ !

ଉଜ୍ଜ୍ୱଳା—ସୁମନ୍ତ୍ର ପାଖକୁ ? ସେ କୋଉଠି ଅଛୁ—କଅଣ ନାଲୁ ମିଶ୍ରେ ଜାଣିଛନ୍ତି ?

ସୁଭଦ୍ରା—କେଜାଣି ଗୋ ଅପା ! ନର-ମାସ୍ୱା ନାରାୟଣ ଜାଣନ୍ତି ନାହିଁ ! ଟୋକାଖଣ୍ଡକର ଗୁଣ କଅଣ ଊଣା କି ? ଭିତରେ ଭିତରେ···

ଉଜ୍ଜ୍ୱଳା—ଭିତର ବାହାର ସବୁ ସମତୁଲ ହୋଇଯିବ ମ ! ତୁ କାହିଁକି ଭାବୁଚୁ ? ହେଲେ ନାଲୁ ମିଶ୍ରେ ସ୍ୱା ଭିତରେ···

ସୁଭଦ୍ରା—ହଁ ମ ଅପା ! ମୁଁ ସେ ଦିନ ଦୂରରୁ ଲୁଚି ଲୁଚି ଶୁଣୁଥିଲି, ହେଲେ ଭଲ କରି ଶୁଭିଲାନାହିଁ କଛୁ—କେତେ ଯେ କଅଣ ସଲାପରାମର୍ଶ ହଉଥାଆନ୍ତି—ସାନବୋଉ, ତଅପୋଇ—ଆଉ ନାଲୁ ମିଶ୍ରେ ।

ଉଜ୍ଜ୍ୱଳା—ଓହୋ ! ଆମ ମୁଣ୍ଡଟାମାନ କାଟିପକେଇବେ ପରା !

ସୁଭଦ୍ରା—ହଁ, କାହା ଗୁଣ ଜଣା ନାହିଁ ଯେ !

ଉଜ୍ଜ୍ୱଳା—ସେସ୍ୱା ପରା—କହିଲେ କୁଳ-କୁଟୁମ୍ବକୁ ଲାଜ—ନକହିଲେ କୁଳ ଭାସିଯାଉଚି !

(ଭିତରୁ ଶୁଣାଗଲା ବାସନ ପଡ଼ିବାର ଝଣ୍‌ଝାଣ୍‌ ଶବ୍ଦ)

ସୁଭଦ୍ରା—ଶୁଣିଚ—ଶୁଣୁଚଟି ଅପା ! ଭାଙ୍ଗିଲା ତ ବାସନଯାକ । ହାତ ଛୁଟି ପଡ଼ିବାକୁ···

(ତଅପୋଇକି ଗାଳି ଦେଇ ଦେଇ ଟାଣି ଟାଣି ଆଣିଲା ବିମଳା—ତଅପୋଇର ହାତ ଦି'ଟା ମାଟି-ପାଉଁଶ ବଲବଲ । )

ବିମଳା—ଛୁଟି ପଡ଼ନାହିଁ ସେ ହାତ । ଚାଲ ମଉନମୁହିଁ, ଚାଲ । (ପ୍ରବେଶ କରି) ଏଇ ତ ଅପା । ଆଗୋ ଠାକୁର-ଘର ସୁନା ବାସନଯାକ ଭାଙ୍ଗି ଚୂନା କଲାଣି ଏ ଟୋକୀ ।

ତଅପୋଇ—ନା'ତ ଭାଉଜ, ଭାଇଙ୍କି ନାହିଁ ତ କହୁ ।

ବିମଳା—ଜଳେ, ମୁଁ ଆଖିରେ ଦେଖିଲି—ମୋ କଥା ମିଛ ହବ ? ଶୁଣିବ ଅପା, ଏ ମଉନମୂର୍ତ୍ତି ଠାକୁର ବାସନ ମାଜୁଥିଲା ବସି । ମୁଁ କହିଲି—'ତଅପୋଇ ଲୋ ! ମୋ ସୁନା ଭଉଣୀଟି ପରା ! ଗହଣୀଏ ବଣ ପାଣିରେ ପକେଇଚ—ଟିକିଏ ବାଟିଦିଅନ୍ତୁ !' ଆଗୋ, ମୋ ମୁହଁରୁ କଥା ସରିଚ କି ନାହିଁ—ପାଉଁଶ ମାଟି-ହାତରେ ତ ଚଢ଼ିକି ଆସିଲା ମୋ ଉପରକୁ—ମତେ ମାରେ କି ନ ମାରେ ! ମୁଁ ସେମିତ ତା ହାତ ଦି'ଟାକୁ ଧରିପକେଇଚ—ଜାଣିଶୁଣି ମ ଅପା—ଜାଣିଶୁଣି ମାରିଦେଲା ଗୋଟାଏ ଗୋଇଠା ସେ ବାସନଯାକ ଝନ ଗଡ଼ଗଡ଼ା ଦେଇ ପଡ଼ିଲା ।

ତଅପୋଇ—ମିଛକଥା ! ତୁ ତ ଓଲଟି ମତେ ଗୋଇଠାଟାଏ ପକେଇଲୁ ସେ...

ବିମଳା—ହଇଲୋ, ମୁଁ ଗୋଇଠା ପକେଇଲି ? ଏଡ଼େ ସତେଇଣ୍ଟା ତୁ ?

ଉତ୍କଳା—ଭାଉଜ ସେ—ମାନତା ଲୋକ ! ଗୋଡ଼ଟା ଟିକିଏ ବାଜିଗଲେ କଅଣ ତୋ ଦେହଟା ଛୁଡ଼ିପଡ଼ୁଥିଲା ?

ସୁଭଦ୍ରା—ସେଇଥିପାଇଁ ତୁ ତାକୁ ମାରିବାକୁ ଚମକି ଆସିବୁ ?

ତଅପୋଇ—ମୁଁ ତ ଚମକି ଆସିନାହିଁ !

ବିମଳା—ହଇଲୋ—ଆସିନୁ ? ଆସିନୁ ତୁ ? ମୁଁ ମିଛ କହୁଛୁ ? ହଇଲୋ, ମୁଁ ମିଛୁଆ ?

(କହୁ କହୁ ତଅପୋଇକି ଖିନ୍ଦାଟାଏ ପକେଇଲେ ।)

ଉତ୍କଳା—(ନରମ ଭାବରେ) ଯା, ବଣତକ ବାଟିଦେବୁ ଯା—ଗହଣୀଏ ବୋଲି ତ ବଣ ! ସୁନାଟିଅ ସେ—ବାଟିଦେବ ସେ ।

ତଅପୋଇ—ମୁଁ ତ ବାଟି ଜାଣିନାହିଁ ବଡ଼ଭାଉଜ ! ତମେ ତ ମତେ କୋଉ କାମ କେବେ ଶିଖେଇନା !

ବିମଳା—ଚାଲ ଲୋ ଟୋକୀ, କେଡେ ଛାଙ୍ଗରେ କଥା କହୁଚୁ ? ଚାଲ୍ !

(ତଅପୋଇକି ଧକ୍କାଟିଏ ପକାଇବାରୁ ସେ ତଳେ ପଡ଼ିଗଲା)

ତଅପୋଇ—ଓହୋ ! ମୁଁ କି ଅପରାଧ କରିଚି ତମମାନଙ୍କର ବଡ଼ବୋହୂକି ?

( କାନ୍ଦିପକେଇଲା—ଉଚ୍ଛୁଳା ଚାଲିଗଲେ । )

ସୁଭଦ୍ରା—ଆଗୋ, ସାନବୋହୂକୁ ଡାକି ଆଣ ମ ! ସୁନା ଲୁହଗୁଡ଼ିକ ପୋଛୁପକେଇବ !

ତଅପୋଇ—( ଉଠି ) ନୂଆ ବୋହୂକୁ ଖୁଣ୍ଟା ଦିଅନାହିଁ । ସେ ତ କିଛି ଦୋଷ କରିନାହିଁ—ସବୁ ଦୋଷ ଯେ ମୋର—ସବୁ ଭୁଲ ଯେ ମୋର ! ଚାଲ ବିମଳି ଭାଉଜ, ମୁଁ ବାଟିଦେବି । ଏତେ ଘର ଲହୁଣୀ ଖୁଆଇ, ଏତେ ଆଦର ସୁଆଗ ଦେଇ ଏଡ଼େ ଗଣ୍ଡି ସଜାଡ଼ିଚି ମୋର—ବିରି ଗଉଣୀଏ କ'ଣ ବାଟି ଦେଇ ପାରିବି ନାହିଁ ? ନିଶ୍ଚେ ପାରିବି—ହଁ, ନିଶ୍ଚେ ପାରିବି ।

(କହୁ କହୁ କାନ୍ଦି କାନ୍ଦି ଚାଲିଗଲା ଭିତରକୁ ।)

ସୁଭଦ୍ରା—ଆଗୋ, ସାନବୋହୂ ନାଁ ଧରିଲାରୁ ବାଧିଗଲା ପରା ଗେହ୍ଲା ନଣନ୍ଦକୁ ?

ବିମଳା—ଯା' କହିଲ ! ଆଃ ଅପା !

(ସୁଭଦ୍ରା ଓ ବିମଳା ଚାଲିଗଲେ)

(କିଛିକ୍ଷଣ ପରେ ବଗିଚାର ପାଚେରି ଆରପଟେ ନାଲୁ ମିଶ୍ରଙ୍କର ପ୍ରବେଶ; ଲକ୍ଷ୍ୟକଲେ ବଗିଚା ଭିତରକୁ—ଦେଖିଲେ କେହି ନାହିଁ । ପାଚେରି ଦେହରେ ଯେଉଁ କବାଟ ଥିଲା, ଦେଖିଲେ ସେଇଟା ବନ୍ଦ । କିଛିକ୍ଷଣ ଷବ ପାଚେରି ଡେଇଁ ବଗିଚା ଭିତରକୁ ଆସିଲେ । ଘରଆଡ଼କୁ ଚାହିଁ କାହାରିକୁ ନ ଦେଖି ଫେରିଗଲାବେଳକୁ କିଏ ଆସୁଥିଲା ପରି ଜଣାଗଲା ଖଞ୍ଜାଆଡ଼ୁ—ନାଲୁ ମିଶ୍ରେ ଗଛ ଆଢ଼ୁଆଳରେ ଲୁଚିଗଲେ ।)

( ଚମ୍ପୀ ପ୍ରବେଶ କରି ବଗିଚାର ଘରଆଡ଼େ ଦୃଷ୍ଟି ନିକ୍ଷେପ କଲା ।)

ଚମ୍ପୀ—କାହିଁ, ଆସି ତ ନାହାନ୍ତି !

(ଫେରିଗଲା ବେଳକୁ ନାଲୁ ମିଶ୍ରେ ବାହାରିପଡ଼ି ଡାକିଲେ ।)

ନାଲୁ—ଚମ୍ପୀ !

ଚମ୍ପୀ—( ଚମକି ) କିଏ ! ( ଦେଖି ) ହୋଇଛି ତ ମିଶ୍ର ସାଆନ୍ତେ ! ମୁଁ ଏଇନେ ତମକୁ ନ ଦେଖି ନେଇଛି ଯାଉଥିଲି ।

ନାଲି—ତୁ କେମିତି ଜାଣିଲୁ ?

ଚମ୍ପୀ—ହଁ, ଦେଈ ପତ୍ର ମତେ ପଠେଇଲେ—କହିଲେ, ସ୍ୱାଇନାଙ୍କୁ କହିଥିଲି ଆସିବାକୁ, ଆସିଥିବେ କାଳେ—ତୁ, ଯା ଦେଖିବୁ, ଆସିଥିଲେ ମତେ ଡାକିଦେବୁ ।

ନାଲି—ହଁ, ତଅପୋଇ କହିଥିଲା—ଏଠିକି ବେଳେ ବଗିଚାରେ ତା ସଙ୍ଗରେ ଦେଖାହେବ । ଆଜିକାଲି ତମ ଘରର ଯୋଉ ଢଙ୍ଗ-ଢାଙ୍ଗ ହେଲାଣି, ଭଉଣୀଟା ସାଙ୍ଗରେ ଟିକିଏ ଦେଖା ହବାର ବି ସୁବିଧା ନାହିଁ । ହଇଲେ ଚମ୍ପୀ, ଘରର କାମଦାମ ସବୁ କୁଆଡ଼େ ତଅପୋଇ କରୁଚି—କାହିଁକି, ତୁ କ'ଣ କରୁଚୁ କି ?

ଚମ୍ପୀ—ମୁଁ କଅଣ କରୁ ନଥିଲି ନା କରନ୍ତି ନାହିଁ ? ହେଲେ ଡାଆଣୀ-ଚତୁର୍ଗୁଣୀଯାକ ତ ଦେଈ-ମାଉସିଙ୍କୁ କେଳେଇ ଖାଇବେ ! ଦେଈ ଡରରେ ମୋ ହାତରୁ ପାଇଟି ଛଡ଼େଇ ନେଇ କରେ । କେବେ କଅଣ ଏଗୁଡ଼ାକ ଜାଣିଥିଲା ନା କରିଥିଲା ? ଏଇନେ ଏବେ ମାଡ଼ଗାଳି ଖାଇ ଗଉଣିଏ ବିଶ ବସି ବସି ବାଣ୍ଟୁଚି । କହିଲ ସାଆନ୍ତେ, ଏଗୁଡ଼ାକ ଦେଖି କାହା ଛାତି ଫାଟି ନ ଯିବ ? (କାନ୍ଦିପକେଇଲା)

ନାଲି—ହଂସୁଲି ଶେଯରେ ଶୋଇ, ସର ଲହୁଣୀ ଖାଇ ରାଜକେମା ତ ରଜା-ରାଇଜର ସପନ ଦେଖୁଥିଲା ! ତା ଭାଗ୍ୟରେ ପୁଣି···

ଚମ୍ପୀ—ତମେ ଟିକିଏ ଡକେଇଥାଅ 'କି—ମୁଁ ଦେଈକି ଡାକିଦଉଚି । (ଏଇ ସମୟରେ ପାଚିରି ଡେଇଁ ବଗିଚା ଭିତରକୁ ଆସିଲେ ଶୁଭେନ୍ଦୁ—ସର୍ବାଙ୍ଗ ତାଙ୍କର କଳା ଚାଦରରେ ଆବୃତ—ମୁହଁରେ ମୁଖା । ଧୀରେ ଧୀରେ ଆଗେଇ ଆସିଲେ, ମାତ୍ର ନାଲି ମିଶ୍ର କି ଚମ୍ପୀ—ଏମାନଙ୍କୁ ଦେଖିବା ପାଇଁ ପ୍ରସ୍ତୁତ ନ ଥିଲା ପରି ହଠାତ୍ ଦେଖିପକେଇ, ଟିକିଏ ହଡ଼ବଡ଼େଇ ଗଲେ ଓ ଉପସ୍ଥିତ ବୁଦ୍ଧିରେ ଗୋଟିଏ ଗଛର

ଅନ୍ତରାଳରେ ଲୁଚଗଲେ । ଏ ସବୁ ଘଟଣା ନାଲୁ ମିଶ୍ର କ ଚମ୍ପୀ କେହି ଜାଣିପାରିଲେ ନାହିଁ; ତାଙ୍କର କଥାବାର୍ତ୍ତା ଚାଲିଥାଏ । )

ନାଲୁ—ଶୁଣ୍ ଚମ୍ପୀ ! ତଅପୋଇକ ଡାକ ଆଉ କଅଣ ହେବ ? ଯୋଉ କାମରେ ତ ଯାଇଥିଲି ସେ କାମ ତ କିଛି ହେଲିନାହିଁ । କୋଉ ମୁହଁରେ ଆଉ ଦେଖାଦେବ ତାକୁ—କଅଣ ବା କହିବ ?

ଚମ୍ପୀ—ଆଗୋ—ଆସିଚ, ଟିକଏ ଦେଖା ଦେଇ ନଗଲେ···

ନାଲୁ—ଆଚ୍ଛା, ତେବେ ଡାକଦେ । ନା ଶୁଣ୍ ଚମ୍ପୀ ! ଆଉ ଦେଖା ଦେବ ନାହିଁ; ତୁ ଖାଲି ତାକୁ କହିଦେବୁ—ନା, ତୋର କିଛି କହିବା ଦରକାର ନାହିଁ—(ବସ୍ତ୍ରାନ୍ତରାଳରୁ ପୂମନ୍ତ୍ରର ସେଇ ପୂର୍ବୋକ୍ତ ଛୁରୀଟି ବାହାର କରି ଚମ୍ପୀ ହାତକୁ ବଢ଼ାଇ) ତୁ ଖାଲି ଏଇଟାକୁ ନେଇ···

ଚମ୍ପୀ—(ଛୁରୀଟାକୁ ଦେଖି, ଚମକି ହାତେ ପଛକୁ ଘୁଞ୍ଚିଯାଇ) ଇଲେ ମୋ ମା ଲୋ ! ଏଇଟା କଅଣ ସାଆନ୍ତେ ?

ନାଲୁ—ଶୁଣ୍ , ପାଟି କରନା । ଏଇଟା ଖାଲି ନେଇ ତଅପୋଇକ ଦେଇ-ଦବୁ—ନଇଲେ ସାନଭାଉଜଙ୍କୁ ଦେଇଦବୁ, ହେଲା !

ଚମ୍ପୀ—ନାହିଁ ମିଶ୍ରେ ସାଆନ୍ତେ ! ମୁଁ ଦେଇକ ଡାକଦଉଚ, ତେମେ ଟିକେ ଏଇଠି ଡକେଇଆଅ । (ଚାଲିଗଲା)

(ନାଲି ମିଶ୍ରେ କିଛିକ୍ଷଣ ଛୁରୀଟାକୁ ଧରି ଅପେକ୍ଷା କଲେ; ବିଳମ୍ବ ହେବାରୁ ଉଦ୍‌ବିଗ୍ନ ହୋଇ ଉଠିଲେ—ଏଣେତେଣେ ଚାହିଁଲେ—ଦୃଷ୍ଟି ପଡ଼ିଗଲା ଅଦ୍ଭୁତ ମୂର୍ତ୍ତି ଶୁଭେନ୍ଦ୍ରଙ୍କ ଉପରେ—ସେ ଚମକି ଉଠିଲେ ।)

ନାଲୁ—କିଏ ! କିଏ !!

(ଶୁଭେନ୍ଦ୍ର ହଠାତ୍ ନାଲୁ ମିଶ୍ରଙ୍କୁ ଆକ୍ରମଣ କରି ତାଙ୍କୁ ଆଉ ମୁହଁ ଖୋଲିବାର ଅବସର ଦେଲେ ନାହିଁ । ନାଲୁ ମିଶ୍ର ଏତେଦୂର ଡରିଯାଇ-ଥିଲେ ଯେ ଛୁରୀଖଣ୍ଡିକ ତାଙ୍କ ହାତରୁ ଖସିପଡ଼ିଲା । ଶୁଭେନ୍ଦ୍ର ତା'ର ସୁଯୋଗ ନେଲେ—ସେଇ ଛୁରୀ ଦେଖାଇ ତାଙ୍କୁ ଆଉ କଥା କହିବାର ଅବସର ଦେଲେ ନାହିଁ—ତାଙ୍କୁ ଟେକି କାନ୍ଧରେ ପକାଇ ଏକ ଲମ୍ଫରେ ପାଚେରି ଡେଇଁ ଅଦୃଶ୍ୟ ହେଲେ । କିଛିକ୍ଷଣ ପରେ ଜର-

ଦେହରେ ଘୋଡ଼ା-ଘାଡ଼ି ହୋଇ ପ୍ରବେଶ କଲେ ମାଳେନ୍ଦ—ତାଙ୍କ ପଛେ ପଛେ ଚମ୍ପୀ । ମାଳେନ୍ଦ ବଗିଚ୍ଛର ଗୃହଆଡ଼େ ଆଖି ବୁଲେଇ କହିଲେ—)

ମାଳେନ୍ଦ—କାହାନ୍ତି ମ ମିଶ୍ରେ ? ଉଃ—ତୁ ଯୋଉଠି ଥିବୁ !

ଚମ୍ପୀ—(ଗୃହଆଡ଼େ ଖୋଜପକେଇ) ମୁଁ ପରା ଏଇଠି ଉକେଇବାକୁ କହି ଦେଇକି ଡାକିବାକୁ ଗଲି ।

ମାଳେନ୍ଦ—ଏଠୁ କଣ ସେ ଉଭେଇଗଲେ ?

ଚମ୍ପୀ—ମୁଁ ଦେଖୁଚି, ତମେ ଖଣ୍ଡା ଭିତରକୁ ଗଲ ! ମୁଁ ତ ଦେଇକି ଡାକୁଥେଲି, ତେମେ କାହିଁକି ଜର-ଦହରେ ପଦାକୁ ବାହାରିପଡ଼ିଲ କହିଲ ?

ମାଳେନ୍ଦ—ତୁନି ହ, ତୁ ବୁଝିବୁ ନାହିଁ କିଛୁ ହେଲେ । ମିଶ୍ରେ କିଛୁ ଓର ପାଇଲେ କି ନାହିଁ କିଛୁ ଜଣାଗଲା ନାହିଁ ।

ଚମ୍ପୀ—କଅଣ ସୁମନ୍ତ ସାଆନ୍ତଙ୍କ କଥା କି ସାନମାଆ ? ସେ ତ କଅଣ କହୁଥେଲେ—ଯୋଉ କାମରେ ଯାଇଥେଲେ ସେ କାମ କିଛୁ ହେଲାନାହିଁ ।

ମାଳେନ୍ଦ—କହୁଥିଲେ ? ଉଃ—ତେବେ—ଉଃ ହତଭାଗୀ ! ବଡ଼ ହତଭାଗୀ ଜୀବନ ତାର । ଉଃ !

ଚମ୍ପୀ—ଗୃହିମ ସାନମାଆ—ଅଣ୍ଡା ନାଗିବ ଦହରେ । ତେଣେ ଦେଇ ଖୋଜୁଥିବ; କ୍ଷୀର ପିଇବ ପରା ? କିଛୁ ତ ଛୁଇଁଲ ନାହିଁ ଦାନଯାକ ।

ମାଳେନ୍ଦ—ଓଃ ! କଅଣ ହବ ତେବେ ?

ଚମ୍ପୀ—ତେମେ ଗୃହିଲ ମ···

ମାଳେନ୍ଦ—ତୁ ବୁଝିବୁ ନାହିଁ କିଛୁ ପୋଡ଼ାମୁହିଁ । ହଉ ଯା—ଦେଇକି କହି-ଦବୁ ଏଇଠିକି କ୍ଷୀର ନେଇ ଆସିବ—ମୁଁ ଏଇଠି ବସିଚି, ମତେ ଟିକିଏ ଭଲ ଲାଗୁଚି । ଉଃ—ଉଃ !

(ଚମ୍ପୀର ପ୍ରସ୍ଥାନ)

ମାଳେନ୍ଦ—ଆଷାଢ଼ ତ ଆସି ଗଲା—ଉଃ—ବୋଇତ ମେଲାଦେବେଣି ତେବେ ! ଦାଜ, ଘର ଧରୁ ଧରୁ ଫେର୍ ଯାହିଁ ସେଇ—

("ରାଧାବଲ୍ଲଭ ହେ, ପାରକର ।"—କହୁ ବିଧବା ବ୍ରାହ୍ମଣୀର ପ୍ରବେଶ)

ବ୍ରାହ୍ମଣୀ—କିଏ, ସାନବୋଉ କି ? ଦହଦୁଖ ନାହିଁ ପରା ?

ମାଳେନ୍ଦ୍ର—ମତେ ଜର ନାନୀ···ଉଃ !

ବ୍ରାହ୍ମଣୀ—ଆହାଃ ଜର-ଦହରେ ବରିଗୁ ବୁଲିବାକୁ ବାହାର ଆସିଚୁ ? ହିଁ—ଦହ ଜର-ଦହରେ ଯିବ, ହେଲେ ସାହାର ଯା ପରକୁଳ ଛାଡ଼ିବ କେମିତି ? ଆଜ ନଣନ୍ଦ ସାଆନ୍ତାଣୀ କୁଆଡ଼େ ଗଲେ କି ?

ମାଳେନ୍ଦ୍ର—କାମ କରୁଥିବ ଘରେ, ଉଃ !

ବ୍ରାହ୍ମଣୀ—ଭଲ, ଭଲ । ବାଡ଼ୁଅ ଝିଅ···ପରଘରକୁ ଯିବ । ସବୁଠି କଅଣ ସବୁ କଥା ଅଛୁ ? କାମଦାମ କରିବ ନାହିଁ, କଅଣ ମାଦଳ ହେବ ? ବାହା ହେଇଥିଲେ ତ···

ମାଳେନ୍ଦ୍ର—(ବାଧାଦେଇ) ତେମେ କୁଆଡ଼େ ଆସିଲ ମ ନାନୀ ?

ବ୍ରାହ୍ମଣୀ—( କଥାର ସୁଅ ଯେମିତି ବାଧା ମାନିବାକୁ ଚାହେଁ ନା) ସେଇ ଟୋକାଟାକୁ—ନଗେଇ-ଶିଖେଇ ଯେତେରଖିଲ—କଅଣ ରହିଲା ? ବାରବୁଲାଟାଏ ତ !

ମାଳେନ୍ଦ୍ର—(ବିରକ୍ତିରେ) ନାନୀ !

ବ୍ରାହ୍ମଣୀ—ହଁ, ମୋର କଅଣ ଅଛୁ ? ମୋର ଠାକୁରେ ଭଲ କି ମୁଁ ଭଲ । ରାଧାବଲ୍ଲଭ ହେ, ପାରକର ! ସେ ଦିନ ଏବେ ଗାଧୁଆ ତୁଠଠେଇଁ ଗାଁ-ମାଇପେ···ଯୋଉ ଟୁପୁରୁଟାପର ।

ମାଳେନ୍ଦ୍ର—କୋଉ କଥା ନାନୀ ?

ବ୍ରାହ୍ମଣୀ—କଅଣ ମିଳିବ ତେଇଁରୁ ? ଏମିତି ହଜାର ଜାଗାରେ ହଜାରେ କଥା ମୁଁ ଶୁଣିଚ···ହେଲେ ସେଗୁଡ଼ାକୁ ମୁଁ କାନ ଦିଏନାହିଁ ।

ମାଳେନ୍ଦ୍ର—(ବିରକ୍ତିରେ) ନାନୀ !

ବ୍ରାହ୍ମଣୀ—ମୁଁ ଯେତେ ଜାଣିଲେ, ଯୁଆ ବୋଲି ଦାଣ୍ଡରେ ଘାଟରେ ଝିଅଟା-ନାଁରେ କିଏ ପାଞ୍ଚକଥା କହିବ, ମୁଁ ସହିବ ? ଦିଏ ମୁହେଁ ମୁହେଁ

ବଡେଇ ! ହେଲେ, ଘର-ନଥାଁ ବୋଲି ମୁଁ ସିନା ଅଣ୍ଟିରେ ସୁରେଇବ,
ଦାଣ୍ଡଲୋକେ କ'ଣ···

(ଭୁଣ୍ଡ-କଥା ଭୁଣ୍ଡରେ ଅଟକିଗଲା, ଦେଖିପକାଇଲା ତଅପୋଇ ଗୋଟିଏ
ପାଟରେ ମାଳେନ୍ଦୁ ପାଇଁ କ୍ଷୀର ଘେନି ଆସୁଛ ।)

ତଅପୋଇ—ନୂଆ ସ୍ୱଜନ !

ବ୍ରାହ୍ମଣୀ—ସ୍ୱଜନଲାଗି କ୍ଷୀର ଆଣିଚୁ କଲେ ? ହେ'-ହେ' ! (ତଅପୋଇର
ଆପାଦମସ୍ତକ ଲକ୍ଷ୍ୟ କରି) ହଇଲେ ଝିଅ ! ଘରଟା ଭିତରେ ତ
କାରବାର ହଉଚୁ—ଦାଣ୍ଡରେ ମୁଣ୍ଡରେ ଏତେ ଗହଣା ନଦ ହେଇଚ
କାହିଁକି ବା ? ବାସଖଣ୍ଡିକ ତ କଅଣ ତଳେ ଲୋଟୁଚ !

ତଅପୋଇ—(ତଳକୁ ଗୃହିଁ) ନା ତ !

ବ୍ରାହ୍ମଣୀ—ଆଲୋ, ତୋର ଭଲକୁ କହୁଚ ମ—ନଇଲେ ମୋର କଅଣ ଥାଏ
—ମୋର ଠାକୁରେ ଭଲ କି ମୁଁ ଭଲ ! ଦାଣ୍ଡରେ ବାରଲୋକ
ବାରକଥା କହୁଚନ୍ତି—ମୋ ହାଡ଼ ସହୁନାହିଁ ବୋଲି ! ହେଲେ ଝିଅ,
କାହାଲାଗି ଥାଉ ଏ ସଜବାଜ ? ଉଲଗି ହେଇପଡ଼ ମା—ଉଲଗି
ହେଇପଡ଼ ! ଯାହାଲାଗି ସଜ ହଉଥିଲୁ ସିଏ ତ ଗଲାଣି ଖସି ।

(ମାଳେନ୍ଦୁ ଧୈର୍ଯ୍ୟ ହରାଇଲେ ।)

ମାଳେନ୍ଦୁ—(ବ୍ରାହ୍ମଣୀର ବାହୁ ଝିଙ୍କିଦେଇ ଗର୍ଜିଉଠିଲେ) ନାଶ ! (ମାଳେନ୍ଦୁ
ଚମକି ଅାସିଲାବେଳେ ତଅପୋଇ ସାଙ୍ଗେ ଧକ୍କା ଲାଗିବାରୁ ତା'
ହାତରୁ କ୍ଷୀରକଂସାଟା ଖସିପଡ଼ିଲା—କ୍ଷୀରତକ ଢାଳିଗଲା ତଳେ ।)

ବ୍ରାହ୍ମଣୀ—ରାଧାବଲ୍ଲଭ ହେ, ପାଶକର ।

(ବଜ୍ର-କଟାକ୍ଷ କଲା ନଣନ୍ଦ ସ୍ୱଜନଙ୍କ ଆଡ଼େ ।)

## ତୃତୀୟ ଦୃଶ୍ୟ

[ ପିପିଲି-ବନ୍ଦର-ରାସ୍ତା; ହାଟବାଟ-କରିବାକୁ ବାହାରିଚନ୍ତି କପିଳ
ମହାପାତ୍ର ଓ ମଣିଭଦ୍ର ।]

କପିଳ—ବୁଝିଲୁ ମଣି ! ଆଉ ସେକାଳ-ପଶାଳ ନାହିଁ । ମୋ ଖୁଡ଼ୀ ଏଇନେ ସାହୁକାର-ଘର ମଙ୍ଗ ଧରି ବସିଛ । ଯେମିତ ମୋଡ଼ିବ ସେମିତ ଗୁଲିବ । ନାଲୁ ମିଶ୍ରଙ୍କ ଖାତର ଆଉ ସେଠି ନାହିଁରେ ମଣିଆ !

ମଣି—ବାକ ମୁଁ ଗଣିବ ବାପୁଡ଼ା—ଖାଲି ଓଧ ପଛେ ପଛେ ବର୍ତ୍ତେଥ ବାଇ ହବା କଥା ପିନା ?

କପିଳ—ଆରେ ନାହିଁ ମ, ତୋ କଥା କଅଣ ମୋ ମନରେ ନାହିଁ ? ସବୁ ହବରେ ମଣି, ସବୁ ହବ ! ଭୁ ଏମିତ ଗୁହନାଁ ହଉଚୁ କାହିଁ ? ଧନ ତ ଚୋର ଦର୍କାର—କେତେ ନବୁ ? ରଖିବୁ କୋଉଠି ? ଆଉ ତାକୁ ଭୋଗ କରିବ କଏ ?

(ଏଇ ସମୟରେ ଦୂରରୁ ବୈଷ୍ଣବର କୀର୍ତ୍ତନ ଶୁଣାଗଲା ।)

ହେଇଟି ରେ ମଣି ! ଶୁଣୁଛୁ ? ସେଇ···

ମଣି—( କାନ ଡେରି ) ହିଁ ଆଜ୍ଞା, ସେଇ । ସେ ଢ଼'ଦନେ ଢନଦନେ ବଦରଆଡ଼େ ଭିକମାଗିବାକୁ ଆସେ । (ନେପଥ୍ୟେ ଗୁହିଁ) ହିଁ ଆଜ୍ଞା, ସେଇ ତ !

କପିଳ—ମଣି ! ଶୁଣୁ ! (ମଣିଭଦ୍ରର କାନରେ କଅଣ କହିଲେ )

ମଣି—ଢ଼'କୋଡ଼ି କ ଢନକୋଡ଼ି ହବ ଆଜ୍ଞା !

କପିଳ—ଦୂର୍, ସେ କଅଣ ବୁଢ଼ୀ ?

ମଣି—ବୁଢ଼ୀ କଏ ଆଜ୍ଞା—ଗଜା ଟୋକାଟାଏ !

କପିଳ—ଆଉ କହୁଚୁ ଢ଼'କୋଡ଼ି କ ଢନକୋଡ଼ି ହବ ?

ମଣି—ମୋ ଦେଇ ହସାବଟା ହୁଏ ନାହିଁ ଆଜ୍ଞା ! (ନେପଥ୍ୟେ ଗୁହିଁ) ହେଇଟି ମହାପାତ୍ରେ-ଆଜ୍ଞା ! ଦେଖୁଚ କେମିତ ଚଳୁପାଚେଲା, କ ମଉଗଜ ଗୁଲ ! ଏଣେ ହସ ହସ ମୁହଁକୁ ବଙ୍କା ଗୁହାଣି !! ତମର ଏକା ଠିକଣା ପସନ୍ଦ ଆଜ୍ଞା । (ଟିକଏ ଦବଯାଇ) ହେଲେ, ବଇଷମୀଟା !— ନାଁ ପିଉଛୁ !!

କପିଳ—ନାଁ ପିଉଛୁ ବୋଲି ତ ମନରେ ଗୋଟାଏ ସାହସ ଆସୁଚ । ବଇଷମୀ ପଗ୍ ସେ···ପାପକୁ ସେ ଡରିବ କାହିଁକ କହିଲୁ ?

ମଣି—ହଁ, କୋଅଲ ଝାଡ଼ିଦେଲେ ସବୁ ସଫା !

(କୀର୍ତ୍ତନ ଗାଇ ଗାଇ ବୈଷ୍ଣବୀର ପ୍ରବେଶ)

ପୁଚ୍ଛିଲେ ଲଳିତ ଅଗୋ ଶ୍ରୀମତୀ ବଦନେ—
ପ୍ରଭାତେ ମେଲିଲି ଆଖି ଲୋ ସଜନୀ
ଲୁଜନତ ହେଲା ମୁଖ,
କାଲିକା ସପନ ଜାଣିଲି ଗୋ ସତ
ସତ ବୋଲି ଏ କି ଦୁଃଖ ॥
ରଜନୀଯାକ ଲୋ ବାଜିଲା ମୋହନ ବେଣୁ
ସାର୍ଥୀ ହେଲା ତାର ଶ୍ରୀଅଙ୍ଗ-ଚନ୍ଦନ ରେଣୁ,
ଛନଛନ ଭାବ, କିବା ଅନୁଭବ
ସବୁ ହେଲା କଲେ ପାଣି ?
ସଖି ! ଲୁଜନତ ହେଲା ମୁଖ ॥

(କିଏ ପ୍ରଥମେ କଥାଟା ଆରମ୍ଭ କରିବ—ମଣିଭଦ୍ର ଓ କପିଳ ମହାପାତ୍ରଙ୍କ ଭିତରେ ଠେଲା-ଠେଲି ଚାଲିଲା । ଶେଷରେ ମଣିଭଦ୍ର ଖୁବ୍ ସାହସ କରି ଆରମ୍ଭ କଲା···)

ମଣି—ଓଳିକ ମାତା !

ବୈଷ୍ଣବୀ—ଜୟ ହେଉ ବାବା !

ମଣି—ସେ···ମତେ କଥଣ ଚିହ୍ନିପାରୁନା କି ମାତା ?

ବୈଷ୍ଣବୀ—ନା ବାବା !

ମଣି—ଆମ ଗାଁରେ ପରା ତମେ ଅଛ ? ମତେ ଦେଖିନା ? (ମନକୁ ମନ) ଅଢ଼ ଗୁରେ ସିଆଣିଆ ଦେଖେଇ ହଉଚ !

(ଏହି ସମୟରେ ହଂସରଥଙ୍କ ପୁଅ ଧନୁଆଁ କାହୁଁ ଧାଇଁ ଆସିଲା)

ଧନୁଆ—ମାତା ! ମାତାକି ହୋ ! (ପ୍ରବେଶ କରି) ତମେ ଆସି ଏଠି ?

(ମଣିଭଦ୍ର ଓ କପିଳ ବିରକ୍ତି ଭାବ ପ୍ରକାଶ କଲେ ।)

ମଣି—ଏବେ ହେଃ—ଏଇଟା ପୁଣି କୁଆଡ଼ୁ ଆସିଲା ଏତେବେଳେ ?

ଧନୁଆ—ତମକୁ ମୋ ବୋଉ ଖୋଜୁଥିଲା ମାତା !

ବୈଷ୍ଣବୀ—ତମ ଘର କେଉଁଠି ଏଇଠି ବାବା ?
ଧନୁଆ—ଆମ ଘର ଦେଖିନା ? ଆମ ଘର ପରା ବଣ୍ଡ଼ପୁର ଗାଁରେ । ମୋ ବାପାଙ୍କ ନାଆଁ ହଂସ ରଥ ।
ମଣି—ସେଇ କାଲୁ—କାଲୁ ବ୍ରାହ୍ମଣ ମାଉ !
ବୈଷ୍ଣବୀ—ମନେ ତ ପଡ଼ୁନାହିଁ—ହୋଇଥିବ ! ଆଛା, ତୋ ବୋଉ ମତେ କାହିଁକି ଖୋଜୁଥିଲା ବାବା ?
ଧନୁଆ—ତେମେ ନନାଙ୍କୁ କାହିଁକି ବଇଷମ କରିଦେଲ ?
କପିଳ—ମରୁ ଯା—ଏଇ କଥା ଏବେ !
ବୈଷ୍ଣବୀ—ମୁଁ ତ କାହାରିକୁ ବୈଷ୍ଣବ କରିପାରେ ନା ବାବା ! ନିଜର ମନ-ବିବେକ ନ କହିଲେ···
ଧନୁଆ—ବୋଉ ପରା କହିଲା—ତେମେ କରିଦେଇଚ ! ତେମେ ଗାଁକୁ ଫେରିଲେ ଆମ ଘରଆଡ଼େ ଯିବ—ନନାଙ୍କୁ ବଇଷମ ହବାକୁ ମନା-କରିଦେବ ।
କପିଳ—ହଉ ହଉ ଯା ! ମାଉ ତ କହିଲେ ଯିବେ··ଯା ।
ମଣି—ହଁ ଯା—ପିଲାଲୋକ, ହାଟ ବାଟ ସାରି ଗାଁକୁ ଫେରିବୁ । ମେଘ ଉଠେଇଲାଣି—ଯା—ଅଡ଼ ଗୁଡ଼େ ଝିଆଣିଆ ଦେଖେଇ ହଉଚ !
ଧନୁଆ—ମାଉ ! ତେମେ ଯିବ—ମୁଁ ଗଲି ।
ବୈଷ୍ଣବୀ—ହଉ, ବାବା !
ମଣି—ଆହେ ଯାଉନ କାହିଁକି !

(ଧନୁଆର ପ୍ରସ୍ଥାନ । ବୈଷ୍ଣବୀ ଗାଇ ଗାଇ ଚାଲିଗଲେ ।)

ଦରଶନ-ସୁଖ ପରଶନେ ଅବା
ବରଜିଲ ଜାଣି ଜାଣି
ଏକା ପରାଭବ ମାନି ?
ନ ଜାଣିଥିଲ ଯା,' ଜାଣିଲି ବୋଲି କି
ହେଲି ଲୋ ସଜନୀ ମୂକ ?
ସଖି ଲୋ, କହ ଏ ଦୁଃଖ କି ସୁଖ ?

କପିଳ—ଏଃ—ସ୍ବଳ ତ ଗଲ ! ଯାଃ - -ସବୁ ପାଗ-ଯୋଗ ବଗିଡ଼ିଗଲ ।

ମଣି—ପାଗ ବଗିଡ଼ି ନାହିଁ, ଯୋଗଟା ଠିକଏ ତମର ଖରାପ ଥେଲ ।

କପିଳ—ସେ ଟୋକାଟା କେଉଁଠି ଥିଲ ?

ମଣି—ଟୋକା ଯୋଉଠି ଥାଉ ଥାନ୍ତୁ, ଟୋକା କଥଣ କୁଆଡ଼େ ପଳଉଚ ? ତେମେ ଆପଣ କାହିଁକ ବ୍ୟସ୍ତ ହେଉଚ ଯେ ? ଗାଁକୁ ଗଲେ ଫେର୍— (ହଠାତ୍ ଆକାଶଆଡ଼େ ଦୃଷ୍ଟି ପଡ଼ିଗଲା) ଦେଖିଲଣି ମହାପାତ୍ରେ ଆଜ୍ଞା ! କେମିତ କଳାହାଣ୍ଡିଆ ମେଘ ଉଠେଇଲଣି ।

(ଦାସ ମହାରଣା ତାଳପତ୍ର ଛତାଖଣ୍ଡେ ଧରି ସେ ବାଟେ ଯାଉଥିଲେ । ମଣିଭଦ୍ରର କଥାଟା କାନରେ ବାଜିବାରୁ ଆକାଶକୁ ଚାହିଁଲେ— ଏଇ ଅବସରରେ କପିଳ ମହାପାତ୍ର ତାଙ୍କୁ ଦେଖିପାରି ଚହ୍ନିଲେ ।)

କପିଳ—କିଏ—ଦାସ ମହାରଣାଏ କି ?

ଦାସ—(ଚାହିଁ) କିଏ ? ମୁଁ ତ ଚହ୍ନିପାରୁନାହିଁ ତମକୁ ?

କପିଳ—ମୁଁ ପରା ବସ୍ତ୍ରପୁର ଗାଁର କପିଳ ମହାପାତ୍ର ।

ଦାସ—ହଁ ଦେଖିଥିବି ନିଶ୍ଚେ, ବାକି ଚହ୍ନିପାରୁନାହିଁ—ବଅସ ତ ଆସି ଯାଉଛି ଚାରିକୋଡ଼ି ହେଲା, ସବୁକଥା ସବୁବେଳେ କଥଣ ହେଜ ରହୁଚ ? ତେମେ ତେବେ ବସ୍ତ୍ରପୁର ଗାଁର ଲୋକ ? ମୁଁ ତ ତମରି ଗାଁ-ଆଡ଼େ ବାହାରିଚ । ବେଣୁଧର ସାହୁକାର ପରା ଆମର···

କପିଳ—ଜାଣେ ମହାରଣାଏ, ସବୁ ଜାଣେ—ତେମେ ସିନା ମତେ ଚହ୍ନିପାରୁନା—ମୁଁ ପରା ନାଲି ମିଶ୍ରଙ୍କ ସାନଭାଇ—ନାଲି ମିଶ୍ରଙ୍କୁ ତ ଚହ୍ନିଥିବ ?

ଦାସ—କି କଥା ସେ'—ନାଲ ମିଶ୍ରଙ୍କୁ ମୁଁ ଚହ୍ନିନାହିଁ ! ତେମେ ତେବେ ତାଙ୍କର ଭାଇ ? ନିଜ ଭାଇ ତ ?

କପିଳ—ଆଉ !

ଦାସ—ତମ ନାଁ ପରା କଥଣ କହିଲ କି ମହାପାତ୍ର ?

(କପିଳ ଟିକିଏ ହଡ଼ବଡ଼େଇଗଲେ, 'ମିଶ୍ର'ଙ୍କ ସାନଭାଇ 'ମହାପାତ୍ର' କେମିତ ହେଲେ---ଏ କଥାର ସମାଧାନ ପାଇଁ ମଣିଭଦ୍ର ଆଡ଼େ

ଗ୍ଲହିଁଲେ । ମଣିଭଦ୍ର ତାଙ୍କୁ ସେ ଅବସ୍ଥାରୁ ଉଦ୍ଧାର କଲ—ସଙ୍ଗେ ସଙ୍ଗେ କହିଲ—)

ମଣି—ସେ ପରା ପିଙ୍ଗଳ ମହାପାତ୍ରଙ୍କ ପୁଅ ହୋଇ ଯାଇଛନ୍ତି !

ଦାସ—ସେଇଆ କହ । ଆଚ୍ଛା ମହାପାତ୍ରେ, ନାଲୁ ମିଶ୍ରେ କାହିଁକି ଏଣେ ଆଉ ଆସୁନାହାନ୍ତି ?

କପିଳ—(ମଣିଭଦ୍ରକୁ ଟିପିଦେଇ) ସେ ପରା ଗାଁରେ ନାହାନ୍ତି । ଡଥପୋଇ ସାଙ୍ଗରେ···

ଦାସ—ଏଁ—ଡଥପୋଇ ! ହିଁ—ଡଥପୋଇ ଖବର ତ ତେମେ ଜାଣିଥିବ ? କହୁଛି, କହୁଛି—ମୋ ମାଥାର ଖବର କଅଣ କିଏ କହୁଛି ? ବୋଇତ କାମରେ ତ ଆସି ଉମର ବଢଲା, ବଳ ହଟିଲା—ତେବେ ବ କଅଣ ଛୁଟି ଅଛୁ ଦଣ୍ଡେ ? ସୁମନ୍ତ ପଳେଇବା ଖବର ପାଇଲିଣି ଆଜକୁ ଦ-ଢନ ମାସ ହେବ । ସେଇଦନୁ ସ୍ୱରୁଚ ମୋ ମାଥାକୁ କିଏ ଦେଖି-ଆସିବ କ ତା ଖବର କିଏ ବୁଝିଆସିବ । ହେଲେ···

କପିଳ—ଖବର ଆଉ ବୁଝିବ କଅଣ ? ମୋ'ଠୁ ଶୁଣ··ଡଥପୋଇ ଏଇଲେ ଘରେ ନାହିଁ ।

ଦାସ—କୁଆଡ଼େ ଯାଇଚ ?

କପିଳ—ଡଥପୋଇର ଯୋଉ ସାନଭାଉଜ ନୁହେ—ତା'ର ଭାଇ ଆସିଥିଲ ଭଉଣୀକ ନବାପାଇଁ । ଡଥପୋଇ ତ ଜଗର ଲଗେଇଲ—କହିଲ—ମୁଁ ଯିବ ଭାଉଜ ସାଙ୍ଗରେ । ବାକ ଭାଉଜଯାକ ତ ତାକୁ ସଦାବେଳେ ମୁଣ୍ଡରେ ମୁଣ୍ଡେଇଥାନ୍ତି··ଦଣ୍ଡେ ଛାଡ଼ବାକୁ ନଥାଏ—ସେମାନେ ଛାଡ଼ବାକୁ ନାରାଜ ହେଲେ । ହେଲେ, ଡଥପୋଇର ଆଉ ତା ସାନ-ଭାଉଜର ଯେମିତ ଭାବ ଜାଣିଚ ତ ମହାରଣାଏ ?

ଦାସ—ହଁ, ସେଉଠୁ ଗଲ ?

କପିଳ—ହଁ, ତା ସାନଭାଉଜ ଗଲ, ସେ ଗଲ, ବାକ ଭାଇନା ଆମର ତାଙ୍କ ସାଥିରେ ଗଲେ ।

ଦାସ—ସତେ ? ନାଲୁ ମିଶ୍ରେ ଏବେ ତାଙ୍କର ସାଥିରେ ଯାଉଚନ୍ତି ? ଭଲ—
ଭଲ ! ହଉ ମା'ଆ ତ ମୋର ଘରେ ନାହିଁ—ଏଇନେ ଟିକଏ ଫୁରୁସତ୍
ଥିଲା ବୋଲି ବାହାରିଥିଲି ତେଣେ ସେ--ଆଉ କାହିଁକି ଯିବ ?

କପିଳ— ନା· · ·କାହିଁକି ମିଛରେ କଷ୍ଟ କରି ଏତେ ବାଟ ଯିବ ?

ଦାସ—ନା, ମା'ର ଖବର ତ ପାଇଲି,ମନଟା ସନ୍ତୋଷ ହୋଇଗଲା ! ହଉ,
ତମେ କଅଣ ହାଟକୁ ବାହାରିଛ ମହାପାତ୍ରେ ! ଏ ଲୋକଟି କିଏ ?

କପିଳ—ସେ ଆମ ଗାଁର ।

ମଣି—ମହାପାତ୍ରେ ଆଜ୍ଞା, ମେଘ କେମିତି ଆଲୋଚନା କଲାଣି—ଦେଖନ୍ତୁ ଟିକି ।

(ସମସ୍ତେ ଆକାଶକୁ ଚାହିଁଲେ)

ଦାସ—ହଁ ହଁ ଆସ, ନଇଲେ ବାଟରେ ହଇରାଣ ହବ ! ପ୍ରସ୍ଥାନ

ମଣି—ହଇହେ ମହାପାତ୍ରେ ଆପଣେ, ଅଡ ଗୁରେ ପିଆଣିଆ ହେଇ କହିଲ
ନାଲୁ ମିଶ୍ରଙ୍କ ସାନଭାଇ ପୁଣି କପିଳ ମହାପାତ୍ରେ ? ମୁଁ ସେବେ ନ
କହିଥାନ୍ତି ପିଙ୍ଗଳ ମହାପାତ୍ରଙ୍କ କଥାଟା ମନରୁ ଫାନ୍ଦ, ବୁଢ଼ା କଅଣ
ଭାବିଥାନ୍ତା—ନା-ନା, କଅଣ ଭାବିଥାନ୍ତା ? ଆସ ଆସ, ଅଡ ଗୁରେ
ପିଆଣିଆ ଦେଖାଇ ହଉଚ । (ଦୁହେଁ ଚାଲିଗଲେ)

## ଚତୁର୍ଥ ଦୃଶ୍ୟ

[ ଛତ୍ରପୁର ବନ୍ଦରର କିଛି ଦୂରରେ ଥିବା ଜଙ୍ଗଲ । ସେଇ ଜଙ୍ଗଲ
ଭିତରେ ସୂର୍ଯ୍ୟାଲୋକ ବି ଭଲଭାବରେ ପଡ଼ିପାରୁନାହିଁ । ଗୋଟିଏ ଗଭୀର
ଖାଲ ଜଙ୍ଗଲଟିକୁ ଦୁଇ ଭାଗରେ ବିଭକ୍ତ କରୁଛି । ଖାଲର ଏକ ଭାଗରେ
ଶୁଭେନ୍ଦୁର ପର୍ଣ୍ଣକୁଡ଼ିଆ । କୁଡ଼ିଆର ଏକ ପାଖରେ ଏକ ପ୍ରକାଣ୍ଡ ଗଛ ।
ସେଇ ଗଛର ଗଣ୍ଡିକୁ ଆଉଜି ଛିଡ଼ାହୋଇଥିଲେ ସୁମନ୍ତ । କୁଡ଼ିଆର କବାଟଟି
ଆଉଜାଇ ଦେଉଁ ଦେଉଁ ନାଲୁ ମିଶ୍ରେ କହିଲେ— ]

ନାଲୁ—ହଁ, ସେଇ ସୁନାରପୁରଠାରେ ଯାଇ ଶୁଣିଲି ରାଧା ଆଉ ନାହିଁ !
ବାକି, ତମ ବାହିଁଙ୍କ ଖବର ଆଉ କେହି କହିପାରିଲେ ନାହିଁ ।

ସୁମନ୍ତ—ଶୁଭ-ନନା ମୋତେ ଜୋର୍ କରି ତାଙ୍କ ସାଙ୍ଗରେ ନେଇଆସିଲେ 'ଛନୁସ୍ଥା'ର ଏଇ ନିବିଡ଼ ଜଙ୍ଗଲ ଭିତରକୁ ! ସାଧା ସୁନ୍ଦଗଳ୍ପରେ ମୋର ମନର ଜୋର ଭାଙ୍ଗିଯାଇଥିଲା ନାଲୁ ଭାଇନା !

ନାଲୁ—ବାଳ ମତେ ଧରିଆଣି ଏମିତି ବନ୍ଦୀକରି ରଖିବାର କାରଣ କଅଣ··· ମୁଁ ତ କିଛୁ ବୁଝିପାରୁନାହିଁ !

ସୁମନ୍ତ—ମୁଁ ପଚାରିଲାରୁ ଶୁଭ ନନା କହିଲେ—"ନାଲୁଭାଇନାଙ୍କୁ ଯେତେବେଳେ ମୁଁ ଝେଙ୍କଆଣି ନଈକୂଳରେ ପହଞ୍ଚିଲି, ସେତେବେଳେ ତାଙ୍କୁ ଯେ ମୋ ସାଙ୍ଗରେ ଏକାବେଳକେ ଏଇଠିକି ନେଇଆସିବି ଏ ଇଚ୍ଛା ମୋର ନଥିଲା; ହେଲେ ମୁଁ ତାଙ୍କୁ ଯେତେ ଯାହା ପଚାରିଲେ ବି ସେ କୌଣସି କଥାର ଉତ୍ତର ନ ଦେବାରୁ···"

ନାଲୁ—ଉତ୍ତର ଦବାର ସାହସ କଅଣ ମୋର ଥିଲା ? ସେତେବେଳେ ତାଙ୍କର ରୂପ, ଭେକ, ଢଙ୍ଗ-ଢାଙ୍ଗ ଦେଖି ମୋର ତ ଫାଙ୍କାଣି ଉଡ଼ିଯାଇଥିଲା ସୁମନ୍ତ···ଉତ୍ତର ଦିଅନ୍ତି କଅଣ ?

ସୁମନ୍ତ—ତାଙ୍କର ବି ଡର ଥିଲା—ତମକୁ, ଛାଡ଼ିଦେଲେ କାଳେ ତେମେ ଗାଆଁ ସାକ ଗଣ୍ଡି କରିଦେଇଥାନ୍ତ ଜଳଦସ୍ୟୁ ବୋଲି; ସେ ପଡ଼ିଥାନ୍ତେ ଧରା । ସହଜେ ତ ମହାରାଜାଙ୍କ ଲୋକେ ତାଙ୍କୁ ଧରିବା ପାଇଁ ଛକି-ରହିଛନ୍ତି ବୋଲି ସେ ଆସି 'ଛନୁସ୍ଥା'ର ଏଇ ଗହନ ବନନ୍ତରେ ବସା ବାନ୍ଧି ରହିଚନ୍ତି ।

ନାଲୁ—ବାଳ, ସେ ସେ କାହିଁକି ସାହୁକାରଙ୍କ ଘରଯାଏ ଚମକିଯାଇଥିଲେ ?

ସୁମନ୍ତ—ତାଙ୍କର ଗାଢ-ମାଢ, ଢଙ୍ଗ-ଢାଙ୍ଗ ସବୁ ବିଚିତ୍ର—ନାଲୁ ଭାଇନା—ସବୁ ବିଚିତ୍ର !

ନାଲୁ—ମୁଁ ଏଠି ଏମିତି ବାନ୍ଧି ହୋଇ ରହିଲି, ତେଣେ ଭଉଣୀଟିର ଯୋଉ ଅବସ୍ଥା—ଯୋଉ ଦହିରଞ୍ଜ···ତମକୁ ତ ସବୁ କହିଚ !

ସୁମନ୍ତ—ନାଲୁ ଭାଇନା ! ମୁଁ ଯୋଉ ସବୁ ଭୁଲ କରିଆସିଚି ତାରି ଏବେ ମୋ'ଠୁ ତାର ମାହାସୂଲ ଆଦାୟ କରୁଚି । ସାଧା ସୁନ୍ଦରଲ—ତଅପୋଇର'ଆଜ ଏ ଯନ୍ତ୍ରଣା-ଭୋଗ !

ନାଲୁ—ହେଲେ ଗୋଟାଏ କଥା ସତ ଯେ, ତମେ ଆଜ ତା' ପାଖରେ ଥିଲେ ସବୁ ଅନୁଦ୍ୱେଗ, ସବୁ ଯନ୍ତ୍ରଣା ସେ ସମ୍ଭାଳି ନେଉଥାଆନ୍ତା ଖୁସି ମନରେ, ହସ ହସ ମୁହଁରେ ।

ସୁମନ୍ତ—ତା ମୁହଁରେ ହସ ଆଣିବାକୁ ମୁଁ ସେଠି ରହୁଥିଲେ, ତା ମନ ସାଙ୍ଗରେ ମତେ ଖେଳ ଖେଳିବାକୁ ପଡ଼ିଥାନ୍ତା, ନାଲୁ ଭାଇନା !

ନାଲୁ—ବାଳ ତମ ମନ ଭିତରେ ଯେଉଁ ରାଧା ଆସନ ପାତି ବସିଥିଲା, ସେଇ ରାଧାକୁ ଛାଡ଼ି ଚାଲିଗଲାବେଳେ ଦୁନିଆଁ ତମକୁ ଯୋଉ କଥା କହୁଥିଲା, ପୁଣି ସେଇ ରାଧା ପାଇଁ ତଅପୋଇକି ଛାଡ଼ିଆସିଲା ଯେତେବେଳେ ଦୁନିଆ ଠିକ୍ ସେଇ କଥା କହୁଚି—କହିବ । ଏସବୁର ମୁହଁ ରୋଧିବାକୁ ହେଲେ···

ସୁମନ୍ତ—ମତେ ଦୁନିଆ ଆଗରେ ମୁହଁମୁନ୍ଧି ଛିଡ଼ାହେବାକୁ ପଡ଼ିବ—ଜାଣେ । ହେଲେ, ମୋର ସେ ଦମ୍ଭ, ସେ ସାହସ ଭାଙ୍ଗିଯାଇଛି ନାଲୁ ଭାଇନା ! ମୋର ମନର କଥା କାହାରିକି କହିବାର—ମୋର ପ୍ରାଣର ପରିଚୟ କାହାରିକି ଦବାର ସାହସ ମୋର ଆଉ ନାହିଁ ।

ନାଲୁ—ବାଳ, ତଅପୋଇ ତମକୁ ଭଲପାଇଚି । ଆଜି ସେଇ ଭଲ ପାଇବାକୁ କାହାଣୀ କରି ଖେଳକେବେ ଯୋଉ ନିନ୍ଦାଅପଯଶ ତା' ଉପରେ ଲଦି ଦଉଚନ୍ତି, ସେଥିରୁ ତାକୁ ମୁକୁଳାଇବାର ସାହସ ବି ତମର ନାହିଁ ? ଛି-ଛି ସୁମନ୍ତ !

ସୁମନ୍ତ—ନାଲୁ ଭାଇନା !

(ସୁମନ୍ତର ଆଖିରେ ଅଶ୍ରୁ ଦେଖି ନାଲୁ ମିଶ୍ରେ ରୁଦ୍ଧ ହେଲେ । ନାଲୁ ମିଶ୍ରେ ଓ ସୁମନ୍ତ ନିର୍ବାକ୍ ହୋଇ ରହିଲେ କିଛିକ୍ଷଣ; ଏତିକିବେଳେ ସେମାନଙ୍କର ପଛପଟେ ଆବିର୍ଭୂତ ହେଲେ ଶୁଭେନ୍ଦୁ ଅତି ସନ୍ତର୍ପଣରେ—ଶରୀରକୁ ଖଣ୍ଡିଏ କଳା ଚାଦରରେ ଆବୃତ ରଖି । ଏ ଦୁହିଁଙ୍କ ଆଡ଼କୁ ବନ୍ଧୁକଟା ଲକ୍ଷ୍ୟ କରି ଛିଡ଼ାହୋଇ ରହିଲେ । ମୁହଁରେ ତାଙ୍କର କଳା ପଟି—ଚହ୍ନିବାର ଉପାୟ ନାହିଁ । ଏ ଦୁହିଁଙ୍କର ଦୃଷ୍ଟି

ଆକର୍ଷଣ କରିବା ପାଇଁ ଶୁରେନ୍ଦ୍ର ଏକ ବିକୃତ ଶବ୍ଦ କଲେ । ସୁମନ୍ତ୍ର ଓ ନାଲୁ ମିଶ୍ରେ ଚମକିପଡ଼ି ଗ୍ଲହିଁଲେ ସେଇଆଡ଼େ ।)

ସୁମନ୍ତ୍ର—ନାଲୁ ଭାଇନା ! ତମେ କୁଡ଼ିଆ ଭିତରକୁ ଯାଅ—ମୁଁ ଦେଖୁଚି ।

ନାଲୁ—ନା ନା, ତମେ ଯାଅନା ! ତମେ କଅଣ ଜାଣିପାରୁନା ସେ···

ସୁମନ୍ତ୍ର—ଜାଣେ ଫିରିଙ୍ଗି ଜଳଦସ୍ୟୁ, ବାକି ମୁଁ କ୍ଷତ୍ରିୟ, ତମେ ବ୍ରାହ୍ମଣ—ସ୍ୱେ ଦ'ଜାତି ଭିତରେ ବହୁତ ପ୍ରଭେଦ । ତମେ କୁଡ଼ିଆ ଭିତରକୁ ଯାଅ ।

(ଶୁରେନ୍ଦ୍ର ସ୍ୱର ବଦଳାଇ ଅଟ୍ଟହାସ୍ୟ କରିଉଠିଲେ । ନାଲୁ ମିଶ୍ରେ ଭୟରେ କୁଡ଼ିଆଭିତରକୁ ପଶିଗଲେ । ଶୁରେନ୍ଦ୍ରଙ୍କ ବନ୍ଧୁକଟା ନଇଁ-ଆସିଲା—ସେ ମୁହଁର ପଟି ଖୋଲିଦେଇ ହସିଉଠିଲେ ।)

ସୁମନ୍ତ୍ର—ଶୁଭ ନନା !

(ସୁମନ୍ତ୍ର, ଶୁରେନ୍ଦ୍ର ଦୁହେଁ ହସିଉଠିଲେ ।)

(କବାଟ ଫାଙ୍କବାଟେ ଶୁରେନ୍ଦ୍ରଙ୍କୁ ଚହ୍ନିପାରି ନାଲୁ ମିଶ୍ରେ ବାହାରକୁ ଆସିଲେ ।)

ନାଲୁ—ଶୁରେନ୍ଦ୍ର ! ତୁମେ ! ମୁଁ ଭାବିଥିଲି ସତେ ସତେ 'ଗମେଶୁ'ଟାଏ ବୋଲି !

ଶୁରେନ୍ଦ୍ର—ହିଁ-ହିଁ । ଗମେଶୁ ଗିବଣେଷ୍ଟ୍ର—କେହି ନୁହେଁ; ତମରି ଲୋକ —ତମରି ଭାଇ । ଗ୍ଲଡ଼ ସେ ବାଜେ କଥା, ନାଲୁ ଭାଇନା ! କଅଣ—ଚାଲିବ ?

(ନିଜ ମୁଣିରୁ କେତେକ ଫଳ ବାହାରକରି ଦେଲେ ।)

ନାଲୁ—(ଫଳ ନେଇ) ଆଚ୍ଛା । ମତେ ଏମିତି ଏଠି କେତେଦିନ ବନ୍ଦୀ କରି ରଖିଥିବ, କହିଲ ?

ଶୁରେନ୍ଦ୍ର—ଯେତେଦିନଯାଏ ଆମେ ତମର ପାନଖାଇ, ଆଉ ତୁମେ ଆମର ଭାଇନା !

ନାଲୁ—ନା,ସେକଥା ନୁହେଁ ଶୁରେନ୍ଦ୍ର ! ତମକୁ ତ ସବୁ କହିଚ—ମୁଁ ଗାଆଁ ଛାଡ଼ି ଏଠି ରହିଲେ···

ସୁମନ୍ତ—ଆଚ୍ଛା ଶୁଭ ନନା ! ହଠାତ୍ ଏମିତ ବସନ୍ତପୁରଯାଏ ଉଡ଼ିସିବାର ଉଦ୍ଦେଶ୍ୟଟା କ'ଣ ? ଏ ଗରିବ ବ୍ରାହ୍ମଣ ବିଚରାକୁ ଲକ୍ଷ୍ୟ କରି, ନା କେଉଁଠି କିଛି ପୋତା ମାଲର ସନ୍ଧାନ ପାଇ ?

ଶୁଭେନ୍ଦୁ—କୌଣସିଟା ସତ ନୁହେଁ ।

ସୁମନ୍ତ—ଅଥଚ ବସନ୍ତପୁର ସାଇ ସାହୁକାରଙ୍କ ବଗିଚା ଭିତରେ ପଶି···

ଶୁଭେନ୍ଦୁ—ସେଇ ବଗିଚା ଭିତରେ ତ ମୋର କାମ ଥିଲା ସୁମନ୍ତ !

ସୁମନ୍ତ—କଅଣ—ଫୁଲ ତୋଳିବାକୁ ନୁହେଁ ତ ?

ଶୁଭେନ୍ଦୁ—ହଁ ଫୁଲ, ଆଉ ସେ ଫୁଲ୍ ତଅପୋଇ !

ସୁମନ୍ତ—(ଚମକିଉଠି) ଶୁଭ ନନା !!

ଶୁଭେନ୍ଦୁ—ଚମକି ଉଠିବାର କଥା ସୁମନ୍ତ—ଚମକି ଉଠିବାର କଥା । ମୁଁ ଗୋଟାଏ ଜଳଦସ୍ୟୁ—ବୋଇତ ଲୁଟିବା ମୋର ପେଶା, ମଣିଷ ମାରିବା ମୋର ଧର୍ମ—ସ୍ନେହ, ମାୟା, ମମତା ମୋର ଶତ୍ରୁ ! ହେଲେ, ରାଧା ଚାଲିଗଲାଦିନୁ ମୋ ମନଭିତରେ ଯୋଉ କୋହ ଉଠୁଛି, ଯୋଉ ସ୍ନେହର ପରଶଟିକ ପାଇଁ ମୋ ମନ ଦିନରାତି କାନ୍ଦିବୁଲୁଛି—ଦୁନିଆ ଆଉ ସମାଜ ତ ବହୁ ଦୂରରେ—ତମେମାନେ ବି ତାର ଖବର ଜାଣିନା—ତାର ପରିଚୟ ପାଇନା—ତାର ସନ୍ଧାନ ନେଇନା !

ସୁମନ୍ତ—ଶୁଭ ନନା !

ଶୁଭେନ୍ଦୁ—ମୁଁ ବାପ-ମା, କୁଳ-କୁଟୁମ୍ବ, ସମାଜ-ଧର୍ମ ସବୁ ଛାଡ଼ିଛି; ଖାଲି ଛାଡ଼ି ନ ଥିଲି ମୋର ପ୍ରାଣର ଭଉଣୀଟିକୁ । ସେଇ ଭଉଣୀ ଥିଲା ମୋର ସାରା ଦୁନିଆଁ—ସମାଜ—ଧର୍ମ—ସବୁ ! ସେଇ ପ୍ରାଣର ରାଧା ଚାଲିଗଲା ପରେ ଦୁନିଆଁ ସାଙ୍ଗରୁ ମୋର ସବୁ ସମ୍ପର୍କ ତୁଟିଯାଇଛି—ମାୟାର ବନ୍ଧନ ଛିଡ଼ିଯାଇଛି—ଜୀବନର ସୁଖ ସରିଯାଇଛି । ବାକି, ତତେ ଜୋର୍ କରି ଟାଣିଆଣିଛି ଦୁନିଆଁର ଗହଳି ଭିତରୁ ଏଇ ନିବିଡ଼ ଜଙ୍ଗଲ ଭିତରକୁ—କାହିଁକି ଜାଣୁ ? ତୁ ରାଧାକୁ କଥା ଦେଇଥିଲୁ—ସେ କଥା ତୁ ରକ୍ଷା କରିବୁ—ମୋର ପ୍ରାଣ ଶୀତଳ ହେବ—ମୋର କୋହ ଶାନ୍ତ ହେବ । ମତେ ଦେବୁ ସୁମନ୍ତ ?

ସୁମନ୍ତ—କଅଣ ଶୁଭ ଜନା ?
ଶୁଭେନ୍ଦ୍ର—ଗୋଟିଏ ଉତ୍ତଣୀ । (ବଡ଼ ଆତୁର ହୋଇ କହିଲେ)
ନାଲୁ—(ଚମ୍ଭୟ ଭାବେ) ଶୁଭେନ୍ଦ୍ର !

(ଏଇ ସମୟରେ ଦୂରରେ ଶିଙ୍ଗା ବାଜଉଠିଲା—ଶୁଭେନ୍ଦ୍ର କାନଡେରି ଶୁଣିଲେ, ହଠାତ୍ ଚଞ୍ଚଳ ହୋଇଉଠିଲେ ।)

ଶୁଭେନ୍ଦ୍ର—ମୁଁ ଆସେ ଭାଇନା !
ସୁମନ୍ତ—ତମ ଦଳର ଡାକ ବୋଧହୁଏ ?
ଶୁଭେନ୍ଦ୍ର—ହଁ ଭାଇ ! ମୁଁ ଆସେ !

(ଚଞ୍ଚଳ ଚାଲଗଲେ)

ସୁମନ୍ତ—ଭଲଚରଟା ଚାଲିଗଲ ତ ନାଲୁ ଭାଇନା ?
ନାଲୁ—ମୁଁ ଖାଲି ଦେଖି-ଶୁଣି କାବା ହେଉଛି ! ଏଇ ଲୋକର ପେଶା ପୁଣି ମଣିଷ ମାରିବା—ଚୋରି କରିବା !
ସୁମନ୍ତ—ସେ ପେଶା ଆଉ ତାଙ୍କର ନାହିଁ ଭାଇନା ! ଯୋଉ ଫିରଙ୍ଗି ଗ୍ରମେଶୁ-ମାନଙ୍କ ସାଙ୍ଗରେ ମିଶି ସେ ଏତେ ସବୁ ଅତ୍ୟାଚାର କରୁଥିଲେ, କୌଣସି କାରଣରୁ ସେମାନଙ୍କ ସାଙ୍ଗରେ ତାଙ୍କ ମନର ଅମେଳ ହେଲା । ଶୁଭ ଜନା ସେ ଦଳ ଛାଡ଼ିଦେଲେ; ମାତ୍ର ସେମାନେ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଶୁଭ ଜନାଙ୍କର ପୁନାଶପୁର ଘର ଲୁଟି କରିନେଲେ । ଗ୍ରଧା ସେତେବେଳେ ଶକ୍ତ ବେମାର । ଶୁଭ ଜନା ଏ କଥା ଶୁଣିଲାଦିନୁ ସେଇ ଦଳର ଲୋକଙ୍କୁ ଖୋଜିବୁଲୁଚନ୍ତି—ପାଇଲେ ଗୋଟି ଗୋଟି କରି ନିପାତ କରିବେ ।
ନାଲୁ—ଏଇନେ ତେବେ ଗଲେ କୁଆଡ଼େ ? ଦଳର ଡାକ ବୋଲି କହିଲେ ଯେ !
ସୁମନ୍ତ—ଏମାନେ ଶୁଭ ଜନାଙ୍କ ନିଜ ଦଳର ଲୋକ—ଆମରି ଦେଶବାସୀ । ବୋଇତ ଲୁଟିବା, ମଣିଷ ମାରିବା ଏମାନଙ୍କର ପେଶା ନୁହେଁ । ଶୁଭ ଜନା ଏମାନଙ୍କୁ ଫିରଙ୍ଗି ଜଳଦସ୍ୟୁମାନଙ୍କ ଅତ୍ୟାଚାରରୁ ଆମ ଦେଶର ବଣିକ-ବୋଇତ ସବୁ ରକ୍ଷାକରିବା କାମରେ ଲଗେଇଚନ୍ତି ।

ନାଲୁ—ଗୋଟାଏ କଥା ମୋର ରଖିବ ସୁମନ୍ତ ? ତମେ ଚାଲ ମୋ ସାଙ୍ଗରେ ।

ସୁମନ୍ତ—ତାର ବାଟ କଅଣ ମୁଁ ରଖିଚି ଆଉ ? ସାହୁକାରଙ୍କ ପାଖରେ ମୁଁ ଯୋଉ ଦୋଷ କରିଚି !

ନାଲୁ—ସେମାନେ ତମକୁ ଆପଣାର ଜନ ଭାବନ୍ତି ସୁମନ୍ତ !

ସୁମନ୍ତ—ତା' ଜାଣେ ଭାଇନା ! ବାକି···

ନାଲୁ—ବାକି-ସାକି ଆଉ କିଛି ନାହିଁ; ତମେ ଚାଲ ମୋ ସାଙ୍ଗରେ । ମନେ ପଡ଼ୁଚି ଭାଇ ! ତଅପୋଇ ଯେତେବେଳେ ତମର ଛୁରିଟାକୁ ମତେ ବଢ଼େଇ ଦେଇ କହିଲା, "ଭାଇନା ! ତାଙ୍କୁ ଖୋଜିବ—ପାଇଲେ ଏଇ ଛୁରିଟା ତାଙ୍କୁ ଦେଇଦେବ ! ତାଙ୍କ ଜିନିଷ ମୋ ପାଖରେ କାହିଁକି ରହିବ ?"—ତା ଆଖିରେ ଲୁହ ଭରିଆସିଲା । ମୁଁ କହିଲି, "ଥାଉ ଭଉଣୀ—ତୋରି ପାଖରେ ଥାଉ—ମୁଁ ଆଗ ତାକୁ ଖୋଜି ବାହାର କରେ !" ସେ କହିଲା, "ନା-ନା, ଏଇଟା ମୋ ପାଖରେ କାହିଁକି ରହିବ ? ରହିଚି ମୋ'ଠି ଯାର ଦାଗ ।"

ସୁମନ୍ତ—ଏଇ ଛୁରିର ଇତିହାସ ତେମେ ଜାଣିନା ନାଲୁ ଭାଇନା ! ମୁଁ ଯାକୁ ତାମ୍ରଳିପ୍ତର ପ୍ରତ୍ୟକ୍ଷ ଦେବତା ମା ବର୍ଗଭୀମାଙ୍କ ଦେଉଳରୁ ପାଇଥିଲି —ଦେବୀଙ୍କର ଆଶୀର୍ବାଦ ରୂପେ । ଏଇ ଅମୂଲ୍ୟ ଧନ ରାଧାକୁ ଉପହାର ଦେବି ବୋଲି ଯା-ଦେହରେ ମୋ ନାଁ ଲେଖି, ଯୋଉଦିନ ରାଧା ପାଖକୁ ଦଉଡ଼ିଗଲି—ଦେଖିଲି—ଗଛ ଉହାଡ଼ରେ ରହି ରାଧା ଗୋଟିଏ ପୁରୁଷ ଲୋକ ସହିତ କଥା ହଉଚି !

ନାଲୁ—ଓ, ଭାଇ-ଭଉଣୀଙ୍କର ସେଇ ଛୁରି ସାକ୍ଷତ—ଯୋଉ କଥା ତମେ କହୁଥିଲ ?

ସୁମନ୍ତ—ସେସବୁ କଥା ତ ମୁଁ ସେତେବେଳେ ଜାଣି ନଥିଲି—ବଡ଼ ଅଭିମାନରେ ଛୁରିଟି ଧରି ଲେଉଟି ଆସିଲି; ତା ପରେ ସେ ଗାଆଁ ଛାଡ଼ିଲି—ରାଧାକୁ ଛାଡ଼ିଲି—ସଙ୍ଗୀ ହେଲା ମୋର ଏଇ ଛୁରି । ଦିନେ

ସାଧବଘର-ବଗିଚ୍ଚରେ ବୁଲି ବୁଲି ଦୈବାତ୍ ଏଇଟି ଅଣ୍ଟାରୁ ଖସିପଡ଼ିଲା ।

(ବେଗେ ଶୁଭେନ୍ଦୁଙ୍କର ପ୍ରବେଶ)

ଶୁଭେନ୍ଦୁ—ହଠାତ୍...

ସୁମନ୍ତ—ମାନେ ?

ଶୁଭେନ୍ଦୁ—ମାନେ—ବଜ୍ରପାତ୍ !

ସୁମନ୍ତ—ବଜ୍ରପାତ୍ !

ଶୁଭେନ୍ଦୁ—ହଁ—ସ୍ଥାନତ୍ୟାଗ ଭାଗ୍ୟରେ ଲେଖିଛି ।

ସୁମନ୍ତ—ବୁଝିପାରିଲି ନାହିଁ ତମ କଥା ।

ଶୁଭେନ୍ଦୁ—ବୁଝିବା ଦରକାର ନାହିଁ । ସଜ ହୋଇପଡ଼ । ଆଚ୍ଛା ନାଲୁ ଭଉଣୀ ! ତେମେ ପରା ଘରକୁ ଫେରିବାକୁ ବ୍ୟସ୍ତ ହେଉଥିଲ—ଚାଲ —ଚଞ୍ଚଳ ବାହାରିପଡ଼ । ମୁଁ ତମକୁ ପଠେଇଦେବାର ବ୍ୟବସ୍ଥା କରିଦେଉଛି ।

ନାଲୁ—ଆଉ ସୁମନ୍ତ ?

ଶୁଭେନ୍ଦୁ—ସୁମନ୍ତର ତ ଯିବାର ଉପାୟ ନାହିଁ ।

ନାଲୁ—ତେଣେ ତଥପୋଇର ଅବସ୍ଥା ?

ଶୁଭେନ୍ଦୁ—ବ୍ୟବସ୍ଥା କଲେ ତ !

ସୁମନ୍ତ—ସଫା କରି କହନା, ଶୁଭ ଦଦା !

ଶୁଭେନ୍ଦୁ—ସଫା କରିସାରିଲେ ତ କହିବି ।

ସୁମନ୍ତ—କଅଣ ?

ଶୁଭେନ୍ଦୁ—ରାସ୍ତା ଭାଇ ରାସ୍ତା ! ଯୋଉ ରାସ୍ତାରେ ସାଧବମାନଙ୍କ ବୋଇତ ଫେରିବ—ସୁବର୍ଣ୍ଣରେଖାର କୂଳ ଚର—ବୁଝିଲୁ ତ ଏବେ ? ସାଧବ-ପୁଏ ବଣିଜ ସାରି ଫେରିବା ରାସ୍ତାରେ ଛକ ରହିଛନ୍ତି ବିଦେଶୀ ଜଳଦସ୍ୟୁ !

ନାଲୁ—ସାଧବପୁଏ ଫେରିବେ ?...କେବେ ଶୁଭେନ୍ଦୁ ?

ଶୁଭେନ୍ଦ୍—ଲୋକ ମୋର ଆସି ଖବର ଦେଲା—ସାହୁକାରମାନଙ୍କର
ବୋଇତ ଦରିଆ ଝେପି ମୁହାଣମୁହଁ ଧରିବାକୁ ଆଉ ଦିନ ଦଶଟା ଲାଗିବ !
ବାକି ଫିରିଙ୍ଗିମାନେ ଛକିରହିଚନ୍ତି ସେଇ ମୁହାଣମୁହଁରେ—ବୋଇତ
ଉପରେ ଚଢ଼ାଉ କରିବେ । ଆମକୁ ସେଇ ମୁହାଣଠିକି ଯିବାକୁ ହବ—
ସାହୁକାରମାନଙ୍କର ଧନ-ଜୀବନ ବଞ୍ଚେଇବାକୁ ପଡ଼ିବ ।

ନାଲୁ—ବାକି, ସୁମନ୍ତ ?

ସୁମନ୍ତ—ମୁଁ ଶୁଭ ନନାଙ୍କୁ ଏକୁଟିଆ ଛାଡ଼ି ଘୁଞ୍ଚିଯିବି କେମିତି ସାଇନା !

ନାଲୁ—ବାକି ସାହୁକାରମାନଙ୍କୁ ବଞ୍ଚେଇବାକୁ ଯାଇ ତେମେ ଯଦି
ଯଦି...

ଶୁଭେନ୍ଦ୍—ଯଦି କ'ଣ କହୁ ? ଛଡି କଅଣ ନାଲୁ ସାଇନା ? ଖାଲି ମରିବାଠୁଁ
କାହାରିକି ବଞ୍ଚେଇ ମରିବା କଅଣ ବଡ଼କଥା ନୁହେଁ ? ଯେ ଏମିତି
ମରି ଜାଣେ—ସେଇ ଏକା ବଞ୍ଚିବାର ଅସଲ ସୁଖ ପାଏ ! ଛଟି ହୁ ପିଲା
ଆମେ ହନ୍ତେଁ—ଏମିତି ମରିବା ଢଙ୍ଗ ତ ଆମ ରକ୍ତ ସାଙ୍ଗରେ ମିଶି-
ରହିଚି ।

(ସୁମନ୍ତ ଏତେବେଳକୁ ସବୁ ଜିନିଷପତ୍ର ବାନ୍ଧି ଧରି, ବନ୍ଧୁକ-କାନ୍ଧରେ
ଆସି ଶୁଭେନ୍ଦ୍ରଙ୍କ ପାଖରେ ଛିଡ଼ାହେଲଣି, ଯାତ୍ରା ଲାଗି ପ୍ରସ୍ତୁତ
ହୋଇ ।)

ସୁମନ୍ତ—ମୁଁ ତିଆରି ହୋଇସାରିଚି ଶୁଭ ନନା !

(ଶୁଭେନ୍ଦ୍ର ମୁଗ୍ଧ ଦୃଷ୍ଟିରେ ସୁମନ୍ତର ଆପାଦମସ୍ତକ ଥରେ ନିରୀକ୍ଷଣ
କଲେ ।)

ଶୁଭେନ୍ଦ୍—ସୁମନ୍ତ !

ସୁମନ୍ତ—କଅଣ ଶୁଭ ନନା, ଚାଲ !

ଶୁଭେନ୍ଦ୍—ନା, ମୁଁ ଭୁଲ କହିଚି ସାଇ ! ତତେ ଯେ ବଞ୍ଚିବାକୁ ହେବ ।
ହଁ—ହଁ—ତତେ ବଞ୍ଚିବାକୁ ହେବ !

ସୁମନ୍ତ—ଏତେ ଚଞ୍ଚଳ ପର କରିଦେଲ ? ମୁଁ ପରା ତମର ସାନଭାଇ
ସୁମନ୍ତ !

ଶୁଭେନ୍ଦୁ—ବାଲ, ତଥପୋଇ ଯେ ମୋର ଭଉଣୀ—ସୁଧାର କଥା ଯେ ମତେ ରକ୍ଷା କରିବାକୁ ହବ ସାଇ !

(ଶୁଭେନ୍ଦୁଙ୍କ ଆଖିରେ ଲୁହ ପୁରିଆସିଲା—ଆଖି ପୋଛିଲେ ।)

ସୁମନ୍ତ—ଶଙ୍ଖ ପଡ଼ନା ଶୁଭ ନନା ! ସାଉକାରଙ୍କ ବୋଇତ ନୁହେଁ, ସାହୁକାରଙ୍କ ଜୀବନ ନୁହେଁ—ଆଜ ଓଡ଼ିଆ ପ୍ରଥର ଧନ-ଜୀବନ, ଓଡ଼ିଆ ଜାତିର ମାନ-ମହତ୍ତ୍ୱ, ଓଡ଼ିଶା ଦେଶର ବଣିଜଲକ୍ଷ୍ମୀ ବିପନ୍ନ ହୋଇଛି । ଆମେ ଛର୍ଦ୍ଦିସ୍ତ ପିଲା—ମାରି ମରିଜାଣିଛୁ, ବଞ୍ଚିଲା ପରି ବଞ୍ଚିଜାଣିଛି—ଚକ୍ତ ଦେଇ ରକ୍ତର ତେଜ ଦେଖେଇଦବା—ପ୍ରାଣ ଦେଇ ପ୍ରାଣର ମୂଲ୍ୟ ବୁଝେଇଦେବା । ତମେ ଆସ, ଶୁଭ ନନା !

(ଦୂରରେ ଶିଙ୍ଗା ବାଜିଉଠିଲା ପୁଣି, ସମସ୍ତଙ୍କର ବେଗେ ପ୍ରସ୍ଥାନ ।)

## ପଞ୍ଚମ ଦୃଶ୍ୟ

[ ବିଷ୍ଣୁପୁର ଗାଆଁ—ସୁବର୍ଣ୍ଣରେଖା ନଈ-ବନ୍ଧ । କପିଳ ମହାପାତ୍ରେ କାହାରିକ ଯେମିତି ଅପେକ୍ଷା କରୁଥିଲେ । ]

କପିଳ—ନା—ମଣିଆଟା ଦେଇ ଶାଗ ସିଝିବ ନାହିଁ ପରା, ମୁଁ ଜାଣେ !
(ଡାକଲେ) ମଣିଭଦ୍ର ! ଆରେ ମଣି ! ମଣିଆ !

(ତରତର ହୋଇ ମଣିଭଦ୍ରର ପ୍ରବେଶ)

ମଣି—କଅଣ ଆଜ୍ଞା ! ପଖାଳ ପୁଞ୍ଜିଏ କରି ଆସୁ ଆସୁ···

କପିଳ—ପଖାଳ କରୁ କରୁ ତେଣେ ସୁଢ ପାହ ସକାଳ ହୋଇଯାଇଥିବ । ମୁଁ ଜାଣେ ପରା ! ତୋ ଦେଇ ଶାଗ ସିଝିବ ନାହିଁ ।

ମଣି—କାହିଁକି ଆଜ୍ଞା ! କୋଉ କାମଟା ମୁଁ ନ କରୁଛି ଯେ ?

କପିଳ—କୋଉ କାମଟା ତୋ ହାତରେ ହଉଛି କହିଲୁ ? ନା ତତେ ସାଙ୍ଗ କରି ମୋର ସବୁ ବରାଦ ଭଣ୍ଡୁର ହଉଛି ।

ମଣି—ମହାପାତ୍ରେ ଆପଣେ, ତେମେ ଆପଣ ଏମିତି ଅଥୟ ହେଲେ ତା' ପାଗ ବଟିଭିଝିବ ଆଜ୍ଞା ! (ନିମ୍ନ ସ୍ୱରରେ) କାଲି ସଞ୍ଜ ବେଳେ ପରା ଯାଇଥିଲି ସେଠିକି ।

କପିଳ—କୋଉଠିକି ? କପଟ ଗାଲୁଆଟାଏ ତୁ ।
ମଣି—ଗାଲୁଆ ମୁଁ ? ତେମେ ତ ଜାଣି ନା ଆଜ୍ଞା ! ସ୍ଥା ଭିତରେ କୋଉଠିକା ପାଣି ଯାଇ କୋଉଠି ଉଠିଲାଣି !
କପିଳ—ମୋର ସେ ପାଣିର ଖବର ରଖିବା ଦର୍କାର ନାହିଁ । କାମ କଅଣ ହେଲା କହ ?
ମଣି—କାମ ବହୁତ ଦୂର ଯାଏ ଆଗେଇଲାଣି ! କହୁଚ ପରା—କାଲି ସଞ୍ଜବେଳେ ଯାଇଥିଲି ସେଠିକି ।
କପିଳ—ଫେର୍ ତ ସେମିତି ପଛଆଡ଼ୁ କଥାଟା କହିଲୁ ।
ମଣି—ଆଜ୍ଞେ, ତା' ପାଖରେ ବସି, ହାତରୁ ପାନ ଖାଇ ଆସିଚ ଟି ।
କପିଳ—କାହା ହାତରୁ ବା ?
ମଣି—ସେଇ ବଇଷମୀ ।
କପିଳ—ନାଃ, ତୁଟା ମଣିଷ ନୁହଁ—ଗୋରୁ ! ସାତଖଣ୍ଡ ରାମାୟଣ ସରିଲା, ଶୁଣି ଶୁଣି କହିଲୁ କଅଣ ନା—ସୀତା ଅଣ୍ଡିରା ! ତୋ' ଦେଇ ଶାଗ ସିଝିବ ନାହିଁ—ସିଝିବ ନାହିଁ—ମିଛରେ ତତେ···
ମଣି—ଆଜ୍ଞେ କଅଣ କଲି ମୁଁ ? ତମର ବରାଦ କାମ ତ କରୁଚ, ଆଉ କଣ କରନ୍ତି ?
କପିଳ—ହଇରେ ! ତତେ ମୁଁ ଏଇଆ ବରାଦ କରିଥିଲି ?
ମଣି—ଆଉ କଅଣ କହିଥିଲେ ମୋର ତ ମନେ ନାହିଁ ।
କପିଳ—ସେଥିପାଇଁ କହୁଚି, ତୋ' ଦେଇ ଶାଗ ସିଝିବ ନାହିଁ; ହଇରେ, ମୁଁ ତତେ ବଇଷମୀ କଥା କହିଥିଲି ? ଛା' କଥା ପରା ବୁଝିଥିଲି ସେଦିନ ?
ମଣି—ବୁଝିଥିଲି—ଫେର୍ ଛଡ଼ି ନ ଥିଲି । ମନଟି ତମର ହମହମ ହଉଚ —ହେଲେ ଭୁଣ୍ଡିଟି ଖୋଲୁନାହିଁ ।
କପିଳ—ମଣିଆ ! କଥାଟା ତ ମନେରଖିନୁ—ଖାଲି ଗାଲୁ ମାଲୁ କରୁଚୁ କାହିଁକି ? ସେ ବଇଷମୀ ଆଉ ହବନାହିଁ—ସେ କଥା ଛାଡ଼୍ ।
ମଣି—ଫେର୍ କୋଉ କଥାକୁ ମ ?

କପିଳ—ଦେଖିଲୁ, ଦେଖିଲୁରେ ଭୂତ ! ତୋର ଜମା ମନେ ନାହିଁ । ନାଃ, ତତେ-ସାଙ୍ଗ କଲ ମୋର ସବୁ କାମ···

ମଣି—ଆହେ, କାମ କଅଣ ଆଉ ତମର ? ଏଇ ତ ହେଲା କାମ ! ଖଡ଼ି ଆଣୁଚନ୍ତି ସାହୁକାର ସବୁ ଧନ···ତେମେ—ଆପଣ ବସି ବସି ଖାଉଚ । ରୋଜଗାର ଚିନ୍ତା ତ ନାହିଁ ।

କପିଳ—ମଣିଆ ! ଫେର୍ ସେମିତି କଥା କହୁଚୁ ?

ମଣି—କାହିଁ ନ କହିବ ଆଜ୍ଞା ? ଗସ୍ତ ଗସ୍ତ କରି ସୁନାରୁପା ଘରେ ସାଇଲୁଚ —ମଣିଆକୁ କଅଣ କାଣିକଉଡ଼ିଟାଏ ସେଥିରୁ ମିଳୁଚି କି ? ଖାଲି କହିବ ମଣିଆ ଦେଇ ଶାଗ ସିଝିବ ନାହିଁ ।

କପିଳ—ତତେ କଅଣ ମୁଁ ନଗଣ କରିବ ଭାବୁଚୁ ମଣି ? ସେ ଦିନ ପରା ତତେ ଏତେକର ବୁଝେଇଥିଲି ? ତୁ ତ ଜମା ଅସ୍ଥ ଧରୁନୁ ।

ମଣି—ଅସ୍ଥ ଧରି ଧରି ଜୀବନଟା ବିତଗିବ—ମହାପାତ୍ରେ ହେବେ ଧନପତି, ଆଉ ମଣିଆ-ବାପୁଡ଼ା ଯିବ ଘାସ-କାଟି ।

କପିଳ—ନାହିଁ ରେ ମଣି ! ତୁ' କୋଉ କଥାକୁ ଭାବନା କରନା । କପିଳ ମହାପାତ୍ର ସେମିତି ଲୋକ ନୁହେଁ ମ ମଣି ! ସେ ସବୁ କରିବ—ବାକି, ଠକା-ଠକି ମାମଲତ ତା' ପାଖରେ ନାହିଁ । ତୁ ଖାଲି ସମାଳି ଯା' ! (ନମ୍ର ସ୍ୱରରେ) ହଇରେ ! ତତେ ପରା ସେଦିନ କହିଥିଲି ତଅପୋଇ କଥା । ତୁ ବୁଝିଲୁ ବଇଷମୀ କଥା ?

ମଣି—(ଚମକି, ପଛେଇ ଯାଇ) ଆଜ୍ଞା ! କାହା କଥା ? ଅତି ଗୁରେ ସିଆଣିଆ ଦେଖେଇ ହଉଚ ?

କପିଳ—ତଅପୋଇ—ତଅପୋଇ କଥା ।

ମଣି—ଆଜ୍ଞା, ତେମେ ଆପଣ ସେମିତି ହେଲଣି—ସେ ଗାଁର କୁଳ-ମହତ ଆଉ ରହିବ ନାହିଁ ।

କପିଳ—ଆରେ—ଯା'ରେ ! କୁଳ-ମହତ ! କୋଉ ମହତଟା ଆଉ ଅଛି ସାହୁକାର-ଘରର ? ମହତଯାକ ତ ହାଟରେ ପଡ଼ି ଦାଣ୍ଡରେ ଗଡ଼ୁଛି ।

ମଣି—ପାଁ-ଜଣ ଏ କଥା କହିବେ ?

କପିଳ—ପଚଶ ଜଣ କହିବେ—ପଚିଶ ଜଣ କହିବେ—ଗାଁ'ଟିଯାକ ସଭିଏଁ କହିବେ—ବଲେଇ ସିନା ଆଖିବୁଜି ଦୁଧ ପିଏ—ହେଲେ ସଭିଏଁ ତାକୁ ଦେଖନ୍ତି ମ' ମଣି ! କୋଉ କଥାଟା ଅଛପା ଅଛି ? ସୁମନ୍ତ ଗଲା—ନାଲୁ ମିଶ୍ରେ ଅଇଲେ—ଫେର୍ ନାଲୁ ମିଶ୍ରେ ଯିବେ—ଏଇ କପିଳ ମହାପାତ୍ରେ ଆସିବେ ।

ମଣି—ହଉ, ଆସନ୍ତୁ କପିଳ ମହାପାତ୍ରେ । ବାକ ମଣିଭଦ୍ର ଏଠୁ ଯିବେ । ଅଡଗୁରେ ସିଆଣିଆ ଦେଖେଇ ହଉଚନ୍ତି ।

କପିଳ—କୁଆଡ଼େ ମଣିଆ ? କୁଆଡ଼େ ଯିବୁ ?

ମଣି—ଘରକୁ ଆଜ୍ଞା··· !

କପିଳ—ତତେ ବାଧିଗଲା କାହିଁକ, ହଇରେ ?

ମଣି—ବାଧିବ ନାହିଁ ? ଯେତେ ହେଲେ ପାଟକକୁଳ—ଏକା ଜାତ !! ମଣିଆ ସବୁ ସହିବ, ହେଲେ ଜାତର ନନ୍ଦା ସହିପାରିବ ନାହିଁ ! ତେଣିକ ଫେର ମିଛ କଥା ନଗେଇ ଅପବାଦ ଦବ ? ଛି-ଛି-ଛି, ତେମେ ବ୍ରାହ୍ମଣ ହେଇ, ଦେବ-ପୂଜା କର, ଏମିତ କଥାଁ ଅସନା କଥାଗୁଡ଼ା ମୁହଁରେ ଧରୁଚ ? ଧର୍ମ ସହିବ ଆଜ୍ଞା ? ନା-ତେମେ ଆପଣ ଯାହା କହୁଥିଲେ—ସେଇଆ; ମଣିଆ ଦେଇ ଶାଗ ସିଝିବ ନାହିଁ—ନା—ମୁଁ ଯାଏଁ—ଅଡ ଗୁରେ ସିଆଣିଆ ଦେଖେଇ ହଉଚନ୍ତି !

(ଅଗ୍ରସର ହେଲ)

କପିଳ—ମଣି ! କଅଣ ସ୍ଖଲିଯାଉଚ ?

ମଣି—ହଁ ଆଜ୍ଞା ! ମୋର ମୁହଁ ରଖିଲେ ଯେ ରହିବ ?

କପିଳ—ଆରେ, ଅଣ୍ଟାରେ ତତେ ମୁଁ ସେମିତ କହୁଥିଲି ନା !

ମଣି—ଅଟ୍ଟା ! ଜାତପତ ନେଇ କ ଅଟ୍ଟା ଆଜ୍ଞା ? ଅଡ ଗୁରେ ସିଆଣିଆ ଦେଖେଉ ହଉଚ ?

କପିଳ—ରୁ ଶୁଣ୍ ମଣିଆ ! ସାଧବଘର ଆମର ଗାଁରେ—ଖଡ଼ୀ ସାଙ୍ଗରେ ତାଙ୍କର ଏତେ ଗୁଡ-ଲଭ—ଡଅପୋଇ ଆମ ଗାଁ ଝିଅ । ମୁଁ ତା'

ନାଁରେ ଏମିତ କହନ୍ତି ? ଲଭେ ଅନ୍ଧାରେ ସେମିତ କହିଦେଲି ନା ।
ଆରେ ମଣି ! ତୁ' ବୁଝିପାରୁନୁ—ସାହୁକାର-ଘର ଧନ ଆମେ ଲୁଟିବା ?
ତାଙ୍କର ନନ୍ଦା କଲେ ତ ଆମକୁ ତାଙ୍କ ଦୁଆର ମଡ଼େଇଦେବେ ନାହିଁ
—ଏତକ ବୁଝିପାରିଲୁ ନାହିଁ ?

(ଦୂରରେ କୀର୍ତ୍ତନ-ବାଜଣା ଶୁଣାଗଲା)

(କାନ ଡେରି) କ'ଣ କରେ ମଣି ?

ମଣି—ଆଖଡ଼ାବାଲା ନଗର-କୀର୍ତ୍ତନ ବାହାର କରିଚନ୍ତି । ମତେ ତ କହିଥିଲେ
ଯିବାକୁ ।

କପିଲ—କ'ଣ ଏଇ ହଇଜା ଯୋଗୁଁ କରେ ?

ମଣି—କାହିଁକି ଅବେଳଟାରେ ସେଗୁଡ଼ିକ ଗୁଣ୍ଡରେ ଧରୁଚ ଆଜ୍ଞା ? ମା'ଆ
ସେ—ସାକ୍ଷାତ୍ ରଣ-ଚଣ୍ଡୀ ! (ଉଦ୍ଦେଶ୍ୟରେ ନମସ୍କାର କରି) ମା' ଲୋ
ମା ! କେବେ ଏ ଗାଁରୁ ମେଲାଣି ଯିବୁ ମା !

କପିଲ—ଆଟପଟାଳରେ ଲୋକେ ମରୁଛନ୍ତି—ନା ରେ ମଣି ?

ମଣି—ପାଇଯାଉ—ମନବୋଧ କରି ବଳି ପାଇଯାଉ ମା' ! ମା'ର ରାଗ
ଶାନ୍ତ ହୋଇଯିବ !

କପିଲ—ମୋ ମନଟା କାହିଁକି ଦବିଗଲା ରେ ମଣି ! ନାଃ—ତୁ ଯା, ମୁଁ
ଘରକୁ ଫେରୁଚ ।

ମଣି—ନଗର-କୀର୍ତ୍ତନକୁ ଯିବ ନାହିଁ ଆଜ୍ଞା ?

କପିଲ—ନା, ତୁ ଯା, ମୁଁ ଘରକୁ ଯାଉଚ । (ପ୍ରସ୍ଥାନ)

ମଣି—ମା'ଲୋ ମା'ଆ—ଉଗ୍ରରୁଚଣ୍ଡୀ ! ଶାନ୍ତ ହ' ମା !

(ନମସ୍କାର କରି କରି ପ୍ରସ୍ଥାନ)

## ଷଷ୍ଠ ଦୃଶ୍ୟ

[ନଈ, ଜଙ୍ଗଲ, ଛେଳମାନଙ୍କୁ ଚରିବାକୁ ଛାଡ଼ିଦେଇ ତଅପୋଇ
ହାଲିଆ ହୋଇ ଗୋଟିଏ ବର-ଗଛ ଉପରେ ମୁଣ୍ଡ ଦେଇ ଭୂଇଁରେ ସେମିତ
ଶୋଇପଡ଼ିଚ । ତାର ମୁଣ୍ଡର ବାଳତକ ତେଲ ଅଭାବରୁ ଜଟ ପାଲଟି

ଯାଇଚ—ଦେହ-ମୁଣ୍ଡରେ ଖଣ୍ଡିଏ ବୋଲି ଗହଣା ନାହିଁ—ପିନ୍ଧିଚ ଖଣ୍ଡିଏ ଯାଚିପିଆଁ ମଇଳା ଲୁଗା—ଦିନମାନ ଖଟି ଖଟି ଦେହର ବର୍ଣ୍ଣ ହେଲାଣି କଳା, ଖାଇବା ପିଇବାକୁ ନ ପାଇ ଚେହେରା ଏମିତି ହେଲାଣି ଯେ ତାକୁ ଚହ୍ନିବାର ଉପାୟ ନାହିଁ ! ତଅପୋଇର ମୁଣ୍ଡ ଉପରକୁ ଥୁଆହୋଇଚି ଗୋଟିଏ ବାଉଁଶିଆ—ତା' ଭିତରେ ମାଟି, ଉପରେ କେଇଟା ଘାସ ଦେଇ ସେ ମାଟିକି ଢାଙ୍କି ଦିଆଯାଇଚି । ସୂର୍ଯ୍ୟ ଅସ୍ତଗଲା ଉପରେ, ତଅପୋଇ ଶୋଇ ଶୋଇ ସ୍ୱପ୍ନ ଦେଖୁଚି—ହଠାତ୍ ଯେମିତି ସୁମନ୍ତ କାହୁଁ ଆସି ତା' ଆଗରେ ଠିଆହୋଇଗଲା । ]



ସୁମନ୍ତ ଡାକିଚି—ତଅପୋଇ !!

ତଅପୋଇ ଉତ୍ତର ଦେଲା—କିଏ ? ସୁମନ୍ତ ! ଏତେଦିନେ ମନେପଡ଼ିଲା ? ଆସ, ମୋ ପାଖକୁ ଆସ । ଦେ'ଲୋ ଚମ୍ପୀ, ହଂସୂଲି ଶେଯଟା ଝାଡ଼ି ଦେ'—ବଡ଼ିଆ ହ'ଖଣ୍ଡ ସାଜ ଦେ—ଅଗୁରୁ ଚନ୍ଦନ ଗୋଳିଦେ ! ଆଉ ଫୁଲହାରଟା ମୋ ହାତକୁ ଦେ । କୁଆଡ଼େ ଗଲୁ ମ ? ସେ ଯେ ଠିଆ ହୋଇ ରହିଲେ ।

ସୁମନ୍ତ କହିଲା—ମୁଁ ତ ଏସବୁ କେବେ ଚାହିଁ ନାହିଁ ତଅପୋଇ !

ତଅପୋଇ ଉତ୍ତର ଦେଲା—କେବେ ଚାହିଁନା ବୋଲି କଅଣ ଆଜି ଚାହିଁବାକୁ ମନା ଅଛି ? ଏତେ ଦିନ ପରେ ଆସିଚ ପରା ! ଓହୋ—ବୁଝିଲି—ଆଜି ମୋର ଏଇ ରୂପରେଖ ଦେଖି ଥକାହୋଇ ଠିଆ ହୋଇଯାଇଚ ପରା ? କଅଣ କରିବ କହ—ଯୌବନର ଶିଖା, ରୂପର ଡହଳ ତ ସବୁଦିନ ସମାନ ରହେନାହିଁ ?

ସୁମନ୍ତ କହିଲା—ବାକି ମନ ?

ତଅପୋଇ କହିଲା—ମନ ! ମନର ଖବର କଅଣ ତମେ ରଖ ସୁମନ୍ତ ?

ସୁମନ୍ତ ଉତ୍ତର ଦେଲା—ରଖେ ତଅପୋଇ—ରଖେ, ମତେ ବିଶ୍ୱାସ କର ।

ତଅପୋଇ କହିଲା—ତମକୁ ବିଶ୍ୱାସ କରି କଅଣ ନିଜଉପରୁ ବିଶ୍ୱାସ ତୁଟେଇ ଦେବି ? ତା'ହେଲେ ଯୋଉ ନିଆଁ ମୁଁ ଜାଣୁ ଜାଣୁ ମୋ ଭିତରେ ଜଳେଇଛି—ତା'ର ତାତି ସମାଳିବ କିଏ ? କେମିତି ?

ସୁମନ୍ତ୍ର ଜଣେଇଲେ—ମୋର ସବୁ କଥା ତମକୁ ଆଜି କହିବି ବୋଲି ଆସିଥିଲି ତଅପୋଇ !

ତଅପୋଇ କହିଲା—କଥା ? ତଅପୋଇ ! କଥା ତ ସବୁ ସରିଛି ସୁମନ୍ତ୍ର ! ଏବେ ବ୍ୟଥାର ପାଳି ପଡ଼ିଛି—ତା'ର ଦାଉରେ ସବୁ ପେଷି ହୋଇଯିବ ସୁମନ୍ତ୍ର—ସବୁ ପେଷି ହୋଇଯିବ । × ସୁମନ୍ତ୍ର ! ସୁମନ୍ତ୍ର ! ଓ, ଚାଲିଗଲ ପରା ! ହଉ ଯାଅ—ତମର ଆସିବା ଯିବା ତ ମୁଁ ରୋକି-ପାରିବି ନାହିଁ ।

× × ×

(କିଛି କ୍ଷଣ ପରେ କୁଳଶେଖର ଯେମିତି କାହୁଁ ଆସି ସେଠି ଛିଡ଼ା ହୋଇଗଲା । )

କୁଳ ଡାକିଲେ—ତଅପୋଇ ! ସୁନାଭଉଣୀ ମୋର !

ତଅପୋଇ ଉତ୍ତର ଦେଲା—କିଏ ? ବଡ଼ଭାଇ !

କୁଳ କହିଲେ—ହଁ ମୁଁ, ତଅପୋଇ ! ମୋତେ କ୍ଷମାକର ଭଉଣି ! ମୁଁ ମୋର ଭୁଲ ବୁଝିପାରିଛି ।

ତଅପୋଇ କହିଲା—ତମର ଭୁଲ ?

କୁଳ କହିଲେ—ହଁ ଲୋ ଭଉଣି ! ମୋର ଭୁଲ୍—ଆମ ସାତଭାଇଙ୍କର ଭୁଲ୍ । ଭାଇ-ଭାଉଜଙ୍କ ଭିତରେ ଯେ ଏତେ ପ୍ରଭେଦ—ଏ କଥା ଜଣାନଥିଲା ଆମକୁ ! ମଣିଷ ଯେ କେବେ ରାକ୍ଷସ ପାଲଟିପାରେ,ଏ କଥା ଜାଣି ନ ଥିଲୁ ଆମେ । ହେଲେ, ଉପରେ ଭଗବାନ ଅଛନ୍ତି, ଦୁନିଆଁରେ ଧର୍ମ ଅଛି—ଅପରାଧର ଶାସ୍ତି ଦେବାକୁ ଅଛନ୍ତି ତୋର ସାତ-ସାତଟା ଭାଇ । ଚକ ପୁଣି ଓଲଟିବ—ଅନ୍ଧାର ସବୁଦିନେ ରହିବ ନାହିଁ—ସର୍ବମଙ୍ଗଳକାରିଣୀ ମାଆ ମଙ୍ଗଳା ତୋର ସବୁ ଭଲ କରିବେ ଭଉଣି—ସବୁ ଭଲ କରିବେ ।

ତଅପୋଇ ଡାକିଲା—ଭାଇ ! ଭାଇ !

ତଅପୋଇ—(ସ୍ୱପ୍ନାଚ୍ଛନ୍ନ ଭାବେ ଉଠିବସି ଡାକଲା) ଭାଇ ! ଭାଇ ! ଭାଇ !
(ଝର ଝର ହୋଇ ଲୁହ ବହିପଡ଼ୁଛି ଆଖିରୁ । ଏହି ସମୟରେ ଦୂରରୁ ଡାକଚ—ହଂସ ରଥଙ୍କ ପୁଅ ଧନୁଆ, "ନାନ—ତଅପୋଇ ନାନ !")
(ଧନୁଆ ପ୍ରବେଶ କଲା, ହାତରେ ତା'ର 'ଲିଆ-ଖଇ'ର ଭୋଗେଇ ।)

ତଅପୋଇ—କଏ ତୁ ବାବୁ, ମତେ ନାନୀ ଡାକଲୁ ?

ଧନୁଆ—ମୁଁ ପତ୍ରି ଶାସନ ସାହୁର ହଂସ ରଥଙ୍କ ପୁଅ ।

ତଅପୋଇ—ତୁ ରଥ-ଆପଣଙ୍କ ପୁଅ ?

ଧନୁଆ—ହଁ, ତୁ ମୋର ନାନୀ ନୁହଁ ?

ତଅପୋଇ—ହଁରେ ବାବୁ ! ମୁଁ ତୋର ନାନୀ, ତୁ ମୋର ଭାଇ !

ଧନୁଆ—ନେ ନାନୀ···ଖା, ଏହି କଣ ଜାଣିଚୁ ? ମା' ମଙ୍ଗଳାଙ୍କ ଭୋଗ । ଏଇ ପାଖ ଗାଁରେ ମଙ୍ଗଳାପୂଜା ହେଉଥିଲା ଯେ ମୁଁ ଯାଇଥିଲି ଦେଖିବାକୁ । ପୂଜା ସରିଲାରୁ ଭୋଗ ବଣ୍ଟାହେଲା ।

ତଅପୋଇ—(ଅନ୍ୟମନସ୍କ ହୋଇଯାଇଥିଲା ଯେମିତି) ମା ମଙ୍ଗଳା ! ଭାଇ କହିଗଲେ—"ସର୍ବମଙ୍ଗଳକାରିଣୀ ମଙ୍ଗଳା ତୋର ସବୁ ଭଲ କରିବେ ।"

ଧନୁଆ—ହଁ ନାନ ! ମା' ମଙ୍ଗଳା ସଭିଙ୍କର ମଙ୍ଗଳ କରନ୍ତି ।

ତଅପୋଇ—କରନ୍ତି ? ତୁ ଠିକ୍ ଜାଣିଚୁ ବାବୁ ?

ଧନୁଆ—ହଁ, ନାନ !

ତଅପୋଇ—ତା'ହେଲେ ତ ମୋର ବି ଭଲ କରିବେ ସେ ? ମୋ ଗୁହାରି ତ ଶୁଣିବେ ? ମୋ ଭାଇମାନଙ୍କୁ ବି ଫେରାଇ ଆଣିବେ ?

ଧନୁଆ—ହଁ, ତୁ ତାଙ୍କୁ ପୂଜା ମାନ୍—ଦେଖିବୁ !

ତଅପୋଇ—(ଦବିଯାଇ) କଅଣ ମୋର ଅଛି ? କଅଣ ଦେଇ ମାଆଙ୍କୁ ତୋଷ କରିବି ?

ଧନୁଆ—ତୁ କିଛି ଭାବନା କରନା—ମୁଁ ଆମ ଘରୁ ଲିଆ—ଖଇ—ନଡ଼ିଆ —ସବୁ ନେଇ ଆସିବି ।

ତଅପୋଇ—ଲିଆ—ଖଇ—ନଡ଼ିଆ ! ନା-ନା, ମୁଁ ଭୁଲିଯାଇଥିଲି, ସେ
ସବୁ ତ କିଛି ଦରକାର ନାହିଁ ! ମାଆ ତ ସେ ସବୁ ଶୁଝାନ୍ତି ନାହିଁ ।
ମୋ ପାଖରେ ଅଛି ଭାଇ—ପାଖରେ ଅଛି ।

ଧନୁଆ—କଅଣ ନାନି ?

ତଅପୋଇ—ଆଖିର ଲୁହ, ମନର ବେଦନା—ପ୍ରାଣର କାକୁଡ଼ି । ହଁ, ସେଇ
ହବ, ସେଥିରେ ଦେଇ ପୂଜା କରିବ ମାଆଙ୍କୁ । କୋଉଠି ମାଆଙ୍କର ପୂଜା
ହେଉଚି କହିଲୁ ଭାଇ ?

(ଯିବାପାଇଁ ବାହାରିଲା)

ଧନୁଆ—ଆଜି ତ ପୂଜା ସରିଗଲାଣି ନାନି ! ଆର ରବିବାର ଦିନ ଫେର୍
ହବ, ମୁଁ ତତେ ନେଇଯିବି ସାଙ୍ଗରେ ।

ତଅପୋଇ—ତୋ ନାଆଁ କଅଣରେ ବାବୁ ?

ଧନୁଆ—ଧନୁଆ ।

ତଅପୋଇ—ହଇରେ ଧନୁ ! ଭୋକ ପିଲା ଘରକୁ ନ ଫେରି ଏ ଜଙ୍ଗଲ-
ପଦାକୁ ଆସିଲୁ କାହିଁକି ବାବୁ ? ସଞ୍ଜ ବୁଡ଼ିଲା ଆସି ।

ଧନୁଆ—ତୁ ତ ଯାଉନୁ—ଛେଳି-ଜଗା କଅଣ ତୋର ସରିନାହିଁ ? ନେ
ଭୋକ ଖାଆ ମ' ତଅପୋଇ-ନାନି !

ତଅପୋଇ—ମୋର ଭାତ ଅଛି ଧନୁ···ମୁଁ ଖାଇବି ଯେ ।

ଧନୁଆ—ହୁଁ ଃ—ଭାତ ଅଛି ? କାହିଁ ଦେଖେ—ଭାତ ନା ମୂଷାମାଟି !

ତଅପୋଇ—(ଚମକି) ତୁ' କେମିତି ଜାଣିଲୁ ?

ଧନୁଆ—ମୋ ବୋଉ ସବୁ କହୁଥିଲା ! ତୁମ ଘରେ ଯୋଉ ଚମ୍ପୀ ପୋଇଲି
ନାହିଁ—ସେ ଆମ ଘରକୁ ମଝିରେ ମଝିରେ ଯାଏ । ତା'ଠୁ ବୋଉ
ତୋ କଥା ସବୁ ଶୁଣେ, ଶୁଣିକରି କାନ୍ଦେ ! ତୋ ଭାଉଜମାନେ ତତେ
ଗଞ୍ଜଣା ଦବା କଥା—ଛେଳି ଜଗେଇବା କଥା—ଖାଇବାକୁ ନ ଦେବା
କଥା—ସବୁ ।

ତଅପୋଇ—ତୁନିହ' ତୁନିହ' ବାବୁ, ସେ ସବୁ ମିଛକଥା !

ଧନୁଆ—ହୁଁଉଁ-ମିଛକଥା ! ତୋର ଛେଳି ଜଗିବା ମିଛ ? ତୋର ଆଜି ଏଇ ରୂପ ଭେକ କଥା ମିଛ ? ଆଉ ଏଇ ମୂଷାମାଂସ କଥା ମିଛ ?
(କହୁ କହୁ ବାଉଁଶିଆଟା ଉଜାଡ଼ିଦେଲା ଯେ ସେଥିରୁ କେଇଟା ମାଣ ଭାତ ଆଉ ବୋଟେ ମୂଷାମାଂସ ବାହାରିଲା ।)
ତଅପୋଇ—(ବାଧାଦେଇ) ଆଉ, ଆଉ ଧନୁ !
ଧନୁଆ—ହେଇଟି, "ଭିତରେ ମୂଷାମାଂସ ଭଣ—ଉପରେ ଭାତ ଗୋଟି ଘର"—ଏଇଗୁଡ଼ାକ ଜଅଣ ତୁ' ଖାଇବୁ ? ଆ'ମ, ଏଇ ଭୋଗକୁ ଦହେଁ ଖାଇବା ।
ତଅପୋଇ—ନା ଧନୁ, ତୁ' ଖାଆ ।
ଧନୁଆ—(ଅଭିମାନରେ) ତୁ' ଖାଇବୁ ନାହିଁ ତେବେ ? ହଉ···
ତଅପୋଇ—ରାଗିଲୁ ଭାଇ ? ହଉ, ମୁଁ ଖାଉଚି ! ଆଗେ ତତେ ମୁଁ ଖୋଇ ଦିଏ ।
(କିଛି ଭୋଗ ନେଇ ଧନୁଆକୁ ଖୁଆଇଦେଲା)
ଧନୁଆ—ମୁଁ ତତେ ଖୋଇଦିଏ ନାନି !
(ଧନୁଆ ତଅପୋଇକୁ ଖୁଆଇଦେବା ସମୟରେ ଦୂରରେ 'ରାମ ନାମ ସତ୍ୟ ହେ, ରାମ ନାମ ସତ୍ୟ ହେ, ହରିବୋଲ'—ଇତ୍ୟାଦି ଶୁଣାଗଲା । ତଅପୋଇର ଖାଇବା ଆଉ ହେଲା ନାହିଁ; ସେ ଚମକି ପଡ଼ି ଧନୁଆକୁ ନିଜ କୋଳକୁ ଆଉଜାଇ ନେଲା ।)
ତଅପୋଇ— ଗାଁ ଭିତରେ ଭାରି ହଇଜା ଲାଗିଚି—ନା'ରେ ?
ଧନୁଆ—ହଁ ଲୋ ତଅପୋଇ ନାନି ! ଶୁଣିଚୁ ନା ? କପିଳ ମହାପାତ୍ରଙ୍କ ଖୁଡ଼ୀ···ସେ ଯୋଉ ରାଣ୍ଡୀ ବ୍ରାହ୍ମଣୀଟା ତମ ଘରକୁ ଯା-ଆସ କରୁ ନ ଥିଲା···ସେ ଆଜି ଦ'ପହରରେ ହଇଜାରେ ମରିଗଲା !
ତଅପୋଇ—ସତେ—ସତେ ଧନୁ ?
ଧନୁ—ହଁ ମ, ହେଲେ ଗାଁ ଭିତରେ ତାର ମୁର୍ଦାର ଉଠେଇବାକୁ କୁଆଡ଼େ କେହି ମିଳିଲେ ନାହିଁ ! ମହାପାତ୍ରେ ଆସି ଆମ ନନାକୁ କହୁଥିଲେ··· ମୁଁ ଶୁଣିଚି ।

ତଅପୋଇ—ଫେର୍ କମିତ ?

ଧନୁ—କେଜାଣି କେମିତ ଉଠିଲ ! ସେ ବୁଢ଼ୀ ବହୁତ ପାପ କରିଥିଲ, ତୁହେ ଜାଣ ! ହେଲେ ମା' ଉଗ୍ରଚଣ୍ଡୀ ତାକୁ ମୋଡ଼ି ଖାଇଲେ ।

ତଅପୋଇ—(ଧନୁଆର ମୁହଁ ଘୁରିଧରି) ଛୁ, ଛୁ, ସେମିତ କହନ୍ତୁ ନାହିଁ ବାବୁ !

(ହଂସ ରଥେ ଡାକ ଡାକ ପ୍ରବେଶ କଲେ)

ହଂସ—ଧନୁଆ, ଜୟ ଗୌରହରି ! ଓଃ କେତେ ଆଉ ଅଉ ଖୋଜିବ ଟୋକାଟାକୁ ! (ଧନୁଆକୁ ଦେଖି) କରେ ଧନୁଆ, ପୂଜା ଦେଖିବାକୁ ଆସି ଜଙ୍ଗଲ-ପଦାରେ ହାଜର ? ବୁଢ଼ାଟାକୁ ଦନ୍ତଗଞ୍ଜ ନ କଲେ ତମ ମାଆ-ପୁଅଙ୍କର କଅଣ ଭାତ ହଜମ ହୁଏନାହିଁ କ'ରେ ? ସନ୍ଧ ହେଲ ଆସି ।

ଧନୁଆ—(ବଡ଼ ପାଟି କରି) ବୋଉକୁ କହି ଆସିଥିଲି ନନା !

ହଂସ—କଅଣ ଏଇ ଜଙ୍ଗଲ-ପଦାରେ ବୁଲିବାକୁ ? (ତଅପୋଇକି ଦେଖିପାରି) ସେ କିଏ କରେ ଧନୁଆ ?

ଧନୁଆ—ସେ ପରା ତଅପୋଇ ନାନୀ ।

ହଂସ—ଓ ?

ଧନୁଆ—(ବଡ଼ ପାଟିରେ) ତଅପୋଇ ନାନୀ ।

ହଂସ—ତଅପୋଇ ? ବେଣୁଧର ସାଧବଙ୍କ ଝିଅ ? କୁଳଶେଖରଙ୍କ ଭଉଣୀ ? ଧନୁଆରେ, ଡାକିଲୁ—ଡାକିଲୁ, ମାଆକୁ ଟିକିଏ ମୋ ପାଖକୁ ଡାକିଲୁ ।

(ତଅପୋଇ ହଂସ ରଥଙ୍କ ପାଖକୁ ଆସିଲ ।)

ହଂସ—(ତଅପୋଇ ଆଡ଼େ ଚାହିଁ) ଏଁ ! ଏହେ କିଏ ? ଏହେ ତଅପୋଇ ତୁହେଁ ରେ ଧନୁଆ !

ଧନୁଆ—ହଁ ନନା ! ଏ ପରା ତଅପୋଇ ନାନୀ ।

ହଂସ—ନା—ନା; ଏଇ ଆଖି ତ ଦେଖିଚ—ଫୁଲଦୋଳରେ ଝୁଲୁଥିଲ ମୂର୍ତ୍ତି ପ୍ରତିମା । ସାତ ଭାଇଙ୍କର ଜୀବନ-ସଙ୍କାଳ—କୁବେରପୁରୀର

ମାଣିକ-ପସରା ! ପ୍ରଜାପତି ପରି ଡେଣି ବୁଲୁଥିଲା ହସ-ଖୁସିର ହାଟେଲ ଲୁଟେଇ···ସେ'ତ ନୁହେଁ !

ତଅପୋଇ—ମଉସା !!

ହଂସ—ଡାକନା—ଆଉ ଡାକନ ମାଆ ! ଛାତି ମୋର ଫାଟିଯାଉଚ, କଥା ମୋର ବୋକଯାଉଚ । ପାଷାଣ ହେଲେ ବି ତରଳିଯିବ—ମୁଁ ତ ଗୁହର ମଣିଷଟାଏ । ନା—ନା···ଆଉ ଦେଖିପାରିବି ନାହିଁ, ଆଉ ସହିପାରିବି ନାହିଁ । ଆ—ଧନୁଆ ! ଆ ଘରକୁ ଯିବା—ଆ ! ଜୟ ଗୌରହରି ! ଜୟ ଗୌରହରି !

(ଧନୁଆକୁ ସଙ୍ଗରେ ନେଇ ଆଖି ପୋଛୁ ପୋଛୁ ପ୍ରସ୍ଥାନ । ତଅପୋଇ ପଥର ପାଲଟି ଯାଇଚ ଯେମିତି । ହଠାତରେ ଛେଳଟାଏ କୋଉଠି ବୋବେଇବାରୁ ଚମକି ଉଠିଲା । ଏହି ସମୟରେ ନାଲୁ ମିଶ୍ରେ କାନ୍ଧରେ ବୋକଟା ପକେଇ ଛନୁଆ ବନ୍ଦରରୁ ଗାଁକୁ ଫେରୁଥିଲେ ସେଇ ବାଟେ—ତଅପୋଇକି ଦୂରରୁ ଦେଖିପାରି ଧାଇଁ ଆସିଲେ ।)

ନାଲୁ ମିଶ୍ରେ—ତଅପୋଇ ! ତଅପୋଇ !

(ତଅପୋଇ ଚମକିଉଠିଲା)

ତଅପୋଇ—କିଏ ?

ନାଲୁ—ଭଉଣୀ ମୋର !

ତଅପୋଇ—ନାଲୁ ଭାଇନା !

(କୁଣ୍ଢାଇ ଧରିଲା ନାଲୁ ମିଶ୍ରଙ୍କୁ, ସଞ୍ଚିତ ଅଶ୍ରୁ ଆଉ ବାଧା ମାନିଲା ନାହିଁ ।)

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

[ମାଧବ-ଘର- ଗୁହାଳ-ଅଗଣା—ମାଳେଦ୍ଧ ଓ ଚମ୍ପୀ କଥାବାର୍ତ୍ତା କରୁ କରୁ ପ୍ରବେଶ କଲେ ।]

ଚମ୍ପୀ—ଆଗୋ ମାନମାଆ ! ବୋଇତ-ବୁଡ଼ା ଖ୍ବେରଗୁଡ଼ାକ ତ ରକତ-ପିଆ ଜାଉ ।

ମାଳେଦ୍ଧ—ବୋଇତ ବୁଡ଼ିଲେ ବୁଡ଼ନ୍ତା ପଛେ…

ଚମ୍ପୀ—ମୋ ଖାଉନ୍ଦମାନେ କେମିତ ଭଲେ ଭଲେ ଘରେ ଗୋଡ଼ ଦାଥନ୍ତେ !

ମାଳେଦ୍ଧ—ସେଇ କଥା ଲୋ ଚମ୍ପୀ । କାଲ୍ ମିଶ୍ରଙ୍କଠୁ ସବୁ କଥା ଶୁଣିଲାଦନୁ ମତେ ଘୃଣଆଡ଼ ଅନ୍ଧାର ଦଶୁଚ ।

ଚମ୍ପୀ—ଏ କଥା ଶୁଣିଲେ ଦେଇଙ୍କର ତ ଛାତି ଫାଟିଯିବ ମାଆ !

ମାଳେଦ୍ଧ—ଦେଈ ତୋର ନ ଶୁଣି କଥଣ ଏ ଯାଏ ବାକି ଅଛୁ ? ହେଲେ ଛାତକ ସେ ପଥର କରଦେଇଚ ଲୋ—ପଥର କରଦେଇଚ ।

ଚମ୍ପୀ—ଏତେ ଦୁଃଖକୁ ଫେର୍ ସୁମନ୍ତ-ସାଆନ୍ତେ ଗଲେ ବାହାର ନଡ଼େଇ କରବାକୁ । ଆଗୋ ମାନମାଆ ! ସେଇ ମାଇକନଆର ଯୋଡ଼ ଖାଇ କଥା ମିଶ୍ର ସାଆନ୍ତେ କହୁ ନଥିଲେ, ସେ କୁଆଡ଼େ ଜନେ ଗୋଟାଏ ବୋଇତବୁଡ଼ା ଖ୍ବେର ?

ମାଳେଦ୍ଧ—(ଅନ୍ୟମନସ୍କା ହୋଇଯାଇଥିଲେ) ହୁଁ ।

ଚମ୍ପୀ—ଆଗୋ ହୁଁ କଥଣ କହୁଚ ମ ? ତା' ସାଥିରେ ସୁମନ୍ତ ସାଆନ୍ତେ କେମିତ…

(ମାଳେଦ୍ଧ ଭାବନାରେ ବୁଡ଼ିଯାଇଥିଲେ, ମନକୁ ମନ କହିଉଠିଲେ)

ମାଳେଦ୍ଧ—ପ୍ରଭୁ ! ବନା ଦୋଷରେ ଦଣ୍ଡ ଦେବା କଣ ତୁମକୁ ସାଜେ ? ଅଧର୍ମର ବଢ଼େଇ କଥଣ ତେମେ ସହୁଚ ପ୍ରଭୁ ?

(ମାଳେଦ୍ଧର ଏ ଭାବନା ଦେଖି ଚମ୍ପୀ ପୂର୍ବ ପ୍ରସଙ୍ଗ ଭୁଲିଗଲା ।)

ଚମ୍ପୀ—ଯାନମାଆ ! ଠାକୁରେ ତ ପଥର ନୁହନ୍ତି ।

(ମାଳେଦ୍ଧ ଯେମିତ କାହାର ପ୍ରତୀକ୍ଷାରେ ବ୍ୟସ୍ତ ହୋଇଉଠିଥିଲେ ।)

ମାଳେଦ୍ଧ—ହଇଲୋ ଚମ୍ପି ! ଆଜି ଏତେ ବେଳଯାଏ ଲୁଆ ଉଦ୍ଧଣୀ କାହିଁକି ଫେରିଲା ନାହିଁ କହିଲୁ ?

ଚମ୍ପୀ—ଫେରୁଥିବ ମାଆ···ଫେରୁଥିବ । ହାଯ୍ ଠାକୁରେ, ପେଟକୁ ଆହାର ନ ଦେଇ ପିଠିକି ପାହାର ଖଞ୍ଜିଲେ ଆପଣାର ଲୋକ— ଆପଣା ଭାଇକେ । ଛଅ-ଛଅଟା ଭାଇକ ତ ନୁହେଁ, ଜାଥନ୍ତା ଡାଆଣୀ ! ଖାଲି ତମର ପାଳ ଧନ ଭାତ ସଜାଡ଼ି ଦେଇଥାଅ ବୋଲି ଦେଇ ମୋର ପେଟପୂରେଇ ଖାଏ । ହେଲେ ବିଧାତା ଆଖି ତ ଫୁଟିଯାଇ ନାହିଁ ଯାନମାଆ—ଫେର୍ ଦେଖିବ କଣ ହବ !

ମାଳେଦ୍ଧ—କଅଣ ଆଉ ହବ ଲୋ ଚମ୍ପୀ ? ହବାକୁ କଅଣ ଆଉ ବାକି ଅଛି ?

ଚମ୍ପୀ—ତେମେ ଯାହା କହ—ଅଧର୍ମ କଅଣ ଲୁଚିରହିବ ? ଠାକୁରଙ୍କ ନିଦ ଭାଙ୍ଗିଲେ ଫେର୍···

ମାଳେଦ୍ଧ—ସେ କଅଣ ସତେ ଭାଙ୍ଗିବ !

ଚମ୍ପୀ—ଭାଙ୍ଗିବ ମାଆ···ଭାଙ୍ଗିବ ! ଦେଖିଲ ତ ଗଣ୍ଡୀ ବ୍ରାହ୍ମଣୀଟାର କି ଦଶା ହେଲା ? 'ଗୋବନ୍ଦ ଗୋବନ୍ଦ' ତୁଣ୍ଡରେ ଧରି ଯେତେ ଯେତେ ଅଧର୍ମ କରୁଥିଲା—କଅଣ ହେଲା ? ରହିଲା ସେ ? ହଇଜା-ବାଡ଼ିରେ ଗଲା । ଫେରି ଏମିତ ହେଲା ଯେ ମୁର୍ଦ୍ଦାର ଉଠେଇବାକୁ ଲୋକ ମିଳିଲେ ନାହିଁ । ଠାକୁରେ ମୋର ପଥର ନୁହନ୍ତି ମା'···ପଥର ନୁହନ୍ତି ।

(ଏହି ସମୟରେ ଧନୁଆ ପ୍ରବେଶ କଲା ଧାଇଁ ଧାଇଁ)

ଧନୁଆ—ସାଧବଘର-ବୋହୂ ! ସାଧବଘର-ବୋହୂ ! ତଥପୋଇ ନାନ୍ନ ନଇବନ୍ଧଠେଇଁ ଅଚେତ ହୋଇ ପଡ଼ିଯାଇଚ ।

ମାଳେଦ୍ଧ—କିଏ କହିଲା ?

ଧନୁଆ—ମୁଁ ପଗ୍ର ଜନେ ଦେଖି ଆସିଲି । ଛେଳ ଘିଢ ନଟିରୁ ଫେରୁଥିଲ ।
ତମେ ଝୁଅଟ କାହାକୁ ପଠା—ମୁଁ ଯାଉଛୁ ଆଗରେ ।

(ବେଗେ ପ୍ରସ୍ଥାନ)

ଚମ୍ପା—ମୁଁ ଯାଉଚ ଯାନମାଆ ! ତେମେ ଖଞ୍ଜା ଭିତରକୁ ଯାଅ ।

ମାଳେଦ—(ପଥର ପାଲଟି ଯାଇଥିଲେ ଯେମିତ) ଚମ୍ପି !

ଚମ୍ପା—କଅଣ ମା' ?

ମାଳେଦ—ଶେଷରେ ଏମିତ ଅପନ୍ତ୍ରଘରେ ପଡ଼ି ହତଭାଗ୍ୟାଟା···

ଚମ୍ପା—ତେମେ ସେଗୁଡ ଭାବ ନାହିଁ ଯାନମା' । ମୁଁ ଯାଉଚ—ଦେଇକ
ମୋର ନେଇଆସେ ।

ମାଳେଦ—ଚ୍ଚଲ୍, ମୁଁ ଯିବ ।

ଚମ୍ପା—ତେମେ କୁଆଡ଼େ ଯିବ ମାଆ ?

(ଏଇ ସମୟରେ କପିଲ ମହାପାଟ, ତାଙ୍କ ପଛରେ ତଅପୋଇକ ଧଣ
ଧନୁଆ ପ୍ରବେଶ କଲେ ।)

କପିଲ—କାହାର ଯିବା ଦର୍କାର ନାହିଁ, କପିଲ ମହାପାଟ ଏ ଗାଆଁରେ
ଥାଉ ଥାଉ ତମର କାହାର ଯିବାର ଦର୍କାର ନାହିଁ ।

ମାଳେଦ—ଲୁଆଭଉଣି !

ତଅପୋଇ—ନୂଆଭାଉଜ !

ମାଳେଦ—ଆ ଭଉଣି ! ଖଞ୍ଜା ଭିତରକୁ ଆ ।

ତଅପୋଇ—ନୂଆଭାଉଜ ! 'ଘରମଣି' ଫେରନାହିଁ ?

ଚମ୍ପା—ଆଗୋ, ସେଇ ମହିଆଣୀ-ମା'ର ଛେଳଟା ।

ତଅପୋଇ—ହଁ, ସଭିଏଁ ଫେରଲେ, ବାକ ଘରମଣିକ ପାଇଲ ନାହିଁ
ଖୋଜ ଖୋଜ ।

ଧନୁଆ—ମୁଁ ଯାଉଚ ନାନ, ଖୋଜବା- -ପାଇଲେ ଅଡ଼େଇ ଆଣିବ ।

ମାଳେଦ—ଗଲୁ ଗଲୁ ବାପ, ଟିକଏ ଦେଖିବୁ । (ଧନୁଆର ପ୍ରସ୍ଥାନ)
ଆ ଭଉଣୀ—ଘରକୁ ଆ ।

(ତଅପୋଇକ ଧଣ ପ୍ରସ୍ଥାନ)

କପିଳ—(ତଅପୋଇ ଯିବା ବାଟକୁ ଚାହିଁ) ଆହା ! ଧନମାନ ଖସରେ ବୁଲି ବୁଲି···

ଚମ୍ପୀ—ହଉ, ତମେ ଆସ ମହାପାତ୍ରେ ! (ଯିବାକୁ ବାହାରିଲା)

କପିଳ—ହେଇଟି ଚମ୍ପୀ ! ବଧାତା-ଘଟସୂଜ ସ୍ନେ ! ଯୋଗକୁ ଧନୁଆ ମୁଁ ସେବାଟେ ଯାଉଥିଲୁ ବୋଲି ସିନା । ସେମିତ ଦେଖି ଦେଇଚ—କନକ-ପ୍ରତିମା ମୋର ଭୂଇଁରେ ଲୋଟୁଚ···

ଚମ୍ପୀ—(ବାଧାଦେଇ) ସବୁ ବଧାତା-ଘଟସୂଜ ମହାପାତ୍ରେ—ସବୁ ବଧାତା-ଘଟସୂଜ ! ନଇଲେ ସେଇ ଖୁଡ଼େଇର ପୁରୁସ ତ ତେମେ ?

କପିଳ—କହନା ସେ ଖଡ୍ଡୀ କଥା ଚମ୍ପି ! ସେଇଟା ମରନାଇଁ ସେ, ଏ ସାର ଗାଆଁଟି ତରିଯାଇଚି । ଏଡ଼କ ଅଧର୍ମୀ ଫେର୍ ଆଥାନ୍ତ ଦୁନଆରେ ? ଯାଇଚ—ନରକ ଭୋଗୁଥିବ ସେ ଏଇନେ ।

ଚମ୍ପୀ—ସିଏ ସିନା ନରକ ଭୋଗୁଥିବ—ଏଣେ ଯୋଉ 'ସରଗ' ଚୂନା କରି ଦେଇଯାଇଚ··ଛାଡ଼, ତମକୁ କହି କଅଣ ହବ—ତମେ ତ ସେଇ ଖୁଡ଼େଇର ପୁରୁସ !

କପିଳ—କପିଳ ମହାପାତ୍ର ସେମିତ ଲୋକ ନୁହେଁ ମ ଚମ୍ପି ! ମତେ ବଶ୍ୱାସ କର !

ଚମ୍ପୀ—ମୁଁ ଗୋଟାଏ ପୋଇଲ୍ଲି-ପରବାଙ୍ଗ ନୋକ । ମୋ ବଶ୍ୱାସରେ କଅଣ ଅଛି ? ଉପରେ ଯିଏ ଉନସ୍ରବ କରୁଚ, ସିଏ ସିନା ବଶ୍ୱାସ କଲେ ! ହଉ, ମୁଁ ଯାଉଚି ମହାପାତ୍ରେ ! ସାନମାଆ ଖୋଜୁଥିବେ ତେଣେ !

(ଚାଲିଯାଉଥିଲା)

କପିଳ—ଏ ଚମ୍ପି !

ଚମ୍ପୀ—(ଫେରି) କଅଣ ?

କପିଳ—କଅଣ କହୁଥିଲି କି—ତଅପୋଇ—(ଶଙ୍କିଯାଇ)—ମାନେ, ସାହୁକାରମାନେ କେବେ ବାହୁଡ଼ିବେ ?

(ଚମ୍ପୀ କିଛି ଉତ୍ତର ନ ଦେଇ ଚାଲିଯାଉଥିଲା ।)

କପିଳ—ଚମ୍ପି !

(ଚମ୍ପୀ ଘରଭିତରୁ ବାହାରି ଆସିଲା ।)

କପିଳ—ତୁ କଅଣ ମୋତେ ଅବିଶ୍ୱାସ କରୁଚୁ ?

ଚମ୍ପୀ—(ମୁହଁ ଲୁଚି) ହଁ ଗୋ ହଁ !

(ଦୁମ୍ ଦୁମ୍ ହୋଇ ଗ୍ୱଲିଗଲା ଖମ୍ବାଆଡ଼େ ।)

କପିଳ—ହଉ ଲୋ ଚମ୍ପି, ହଉ । ଆସ୍ତେ ଆସ୍ତେ ସବୁ ହବ । ଏ ଗାଆଁ ଖଣ୍ଡିକରେ ଏଇନେ କପିଳ ମହାପାତ୍ରଙ୍କୁ ଛାଡ଼ିଦେଲେ ଚଳାଲା କଥାଟି ମିଛ ଯେ ! ବିଶ୍ୱାସ କରିବାକୁ ହବ ଲୋ ଚମ୍ପି—ବିଶ୍ୱାସ କରିବାକୁ ହବ । (ପ୍ରସ୍ଥାନ)

(ଚଅପୋଇକୁ ଧକ୍କା ମାରି ମାରି, ଚିତ୍କାର କରି କରି ସୁଭଦ୍ରାର ପ୍ରବେଶ । )

ସୁଭଦ୍ରା—ଯା—ବାହାର ଏ ଘରୁ ! ଅଲକ୍ଷଣୀ ! ମୋର ଏତେ ଆଦରର ଘରମଣିକୁ ଜଙ୍ଗଲରେ ବାଘମୁହଁକୁ ଠେଲିଦେଇ ଏଠି ଆସି ସାନଖୁଡୀଙ୍କ ପାଖେ ବସେଇ ହଉଚୁ ? କଆଁ ମ ? କୋଉ ଗୁଣକୁ ?

ଚଅପୋଇ—କେତେ ଖୋଜିଲି ମୁହିଁଆଣି ଭଉଜ, ପାଇଲି ନାହିଁ ।

ସୁଭଦ୍ରା—କେମିତି ପାଆନ୍ତୁ ଲୋ ଟୋକୀ ? ଜଙ୍ଗଲ ପଦାରେ ଛେଳି ଚରେଇ ଯାଇ ତ ନାଗର ଖୋଜିବୁଲୁଚୁ—ପାଆନ୍ତୁ କେମିତି ? ଯା' ମୋ' ଘରମଣିକୁ ଆଣି ଗୁହାଳରେ ପୂରେଇବୁ, ତେବେ ଯାଇ ଏ ଘରେ. ଗୋଡ଼ ଦବୁ ।

(ଆକାଶରେ ସେତେବେଳକୁ ମେଘର ସଞ୍ଚାର ହେଲାଣି—ବିଜୁଳି ବି ଚମକିଲାଣି ।)

ଚଅପୋଇ—ସଞ୍ଜ ବୁଡ଼ିଲାଣି—ଏଣେ ମେଘ ବି ଘୋଟିଆସିଲାଣି ! କାଲି ସକାଳେ ପଛେ'···

ସୁଭଦ୍ରା—କାଆଲି ଯିବୁ ? କଲେ, ଛେଳିକି ତ ମୋର ଆଜ ବାଘ ଖାଇବ; ତୁ କାଲି ଯାଇ କଅଣ କରିବୁ ମ ? ନା, ଯା—ଏଇନେ ଯା । କଲେ— ଯାଉଚୁ ନା ? ଯା ! (ଚଅପୋଇକୁ ଧକ୍କାଟାଏ ପକାଇବାରୁ ସେ ପଡ଼ିଗଲା ତଳେ । ଭିତରୁ ଦଉଡ଼ିଆସିଲେ ମାଲେଧ ଡାକ ଡାକ ।)

ନୀଳେନ୍ଦ୍ର—ଛୁଆଁଭଉଣି ! ଛୁଆଁଭଉଣି ! ( ପ୍ରବେଶ କରି ) ଏ କଣ !
(ତଅପୋଇକୁ ଉଠେଇ) ଆ—ଘରକୁ ।

ସୁଭଦ୍ରା—କଳ୍ପେ—ଏ ସାନବୋଉ ! ତତେ କଣ ମଣିଷ ଦିଶୁନାହିଁ କି ?
ଛାଡ଼ିଦେ ତାକୁ କହୁଚି !

ନୀଳେନ୍ଦ୍ର—ନା, ଏଇ ସନ୍ଧିମୁହୂର୍ତ୍ତରେ—ମେଘ ପବନ ମାତିଆସୁଚି, ଅଖିଆ-
ଅପିଆ—

ସୁଭଦ୍ରା—ଆହା ହା—ମରିଯାଉଥାଏଁ ଲୋ ? ଅଖିଆ ଅପିଆ ! କାଆଁ ମ ?
ଜଣ ତ ବାଉଁଶିଏ ଲେଖାଏଁ ଖାଉ ଗିଳୁଚି—ତା' ସାଙ୍ଗକୁ ଫେର୍
ନଅ ତୁଣ ଛଅ ଭଜା ନହେଲେ ଚଳୁନାହିଁ । ଅଖିଆ-ଅପିଆ କିଏ ବା ?

ନୀଳେନ୍ଦ୍ର—ଅପା ! ମଣିଷ ଆଖିରେ ଧୂଳିଦଉଚ ବୋଲି ବିଧାତାଙ୍କ ଆଖିରେ
ଧୂଳି ଦେବାକୁ ଚେଷ୍ଟା କରନା । ଖଟମିଛ କହି ଦୁନିଆଁକୁ ଭଣ୍ଡି
ଦେଇପାର, ଦୁନିଆଁର ମାଲିକକୁ ଭଣ୍ଡିବାର ସାହସ କରନା । ଅଧର୍ମର
ବଢ଼େଇ ଦିନେ ନା ଦିନେ ଚୂନା ହୋଇଯିବ; ପାପର ଫଳ ଦିନେ
ଭୋଗକରିବାକୁ ହବ—ଉଞ୍ଚେଇଲି ପାହାର ଦିନେ ଓଲଟି ପଡ଼ିବ !

ସୁଭଦ୍ରା—କଳ୍ପେ ! ହଇ ତ ବଢ଼ି ବଢ଼ି କଥା କହୁଚୁ ? ହଇ ଲୋ, ମୁଁ
ପାପୀ ? ଦେଖିବ ତ ଭଲ ! କେମିତି ତୁ ତାକୁ ଅଟକେଇ ରଖିବୁ—
(ତଅପୋଇକୁ) କଳ୍ପେ—ଯାଉଚୁ ନା ଠୋକି ? ଯା—ଯାଉଚୁ ନା !
(ତଅପୋଇକୁ ଗୋଇଠା ମାଇଲାବେଳକୁ ନୀଳେନ୍ଦ୍ର "ଅପା !"
ବୋଲି କହି ସୁଭଦ୍ରା ହାତ ଧରି ଝିଙ୍କିଆଣିଲେ । ସୁଭଦ୍ରା ବସିପଡ଼ି
ହଠାତ୍ ଚିତ୍କାର କରି ଉଠିଲେ । )

ସୁଭଦ୍ରା—ଓହୋ ହୋ ! ମାରିପକାଇଲା •ଲୋ ! ମାଇପିଟା ମୋତେ ମାରି-
ପକେଇଲା ।

(ଚିତ୍କାର ଶୁଣି ଭିତରଆଡ଼ୁ ଧାଇଁ ଆସିଲେ ବିମଳା ଆଦି ଯାଆମାନେ—
"କଅଣ ହେଲା ? କଅଣ ହେଲା ?" କହି)

ବିମଳା—(ସୁଭଦ୍ରାକୁ ଉଠେଇ) କଅଣ ହେଲା ଅପା ?

(ଏହି ସମୟରେ ଭିତରୁ ଡାକିଲା ଚମ୍ପୀ)

ଚମ୍ପୀ—ଧାଇଁଆସ ଗୋ ଧାଇଁଆସ । ବଡ଼ମାଆ ପଡ଼ିଯାଇ ମୁଣ୍ଡ ଫଟେଇ ଦେଲେଣି । ରକ୍ତରେ ଅଗଣା ଭାସୁଚି ।

(ସମସ୍ତେ ବ୍ୟସ୍ତ-ବ୍ୟସ୍ତ ହୋଇ ଧାଇଁଲେ ଭିତର ଆଡ଼େ; ନୀଳେନ୍ଦ୍ର ଓ ତଅପୋଇ ଛିଡ଼ା ହୋଇଥାନ୍ତି ।)

ନୀଳେନ୍ଦ୍ର—ଛୁଆଭଉଣି !

ତଅପୋଇ—ନା—ନା—ମତେ ଛୁଇଁଦେ—ଛୁଇଁଦେ ନୂଆଭାଉଜ ! ପରସ୍ତ ପରସ୍ତ ହୋଇ ଆକାଶଟାଯାକ କଳାବଉଦ ଘୁଞ୍ଚିଗଲାଣି—ଥାଳୁଥ କାହ୍ନି ଲିଭିଗଲାଣି ନୂଆଭାଉଜ ! ଏଇ ଝଡ଼ ବତାସରେ ଦୀପ-ଶିଖାଟି ଧରି ତୁ କଅଣ ମୋ ଭାଗ୍ୟକୁ ବାଟ ଦେଖେଇ ପାରିବୁ ?

(ଆକାଶରେ ବିଜୁଳି ଚମକି ଉଠିଲା ।)

ନୀଳେନ୍ଦ୍ର—ଭାଗ୍ୟ ! ଭାଗ୍ୟ !

(ନୀଳେନ୍ଦ୍ର ଫେରି ଚାହିଁଲାବେଳକୁ ତଅପୋଇ ବାହାରି ଚାଲିଗଲାଣି—ସେଇ ବିଜୁଳି ଚମକରେ ଗୋଡ଼ କାଢ଼ି ।)

ନୀଳେନ୍ଦ୍ର—ଛୁଆଭଉଣି ! ଛୁଆଭଉଣି ! ନା, ଯାଉ ସେ । କୁରୁସଭାତଳେ ପାଣ୍ଡବ-ଘରଣୀଙ୍କ ମହତ ଜଗିଥିଲେ କୃଷ୍ଣଚନ୍ଦ୍ର । ନିଆଁରେ ଝାସ ଦେଇ ଜନକନନ୍ଦିନୀ ଶୁଦ୍ଧ ସୁବର୍ଣ୍ଣ ହୋଇ ବାହାରିଥିଲେ—ଆଜି ହତଭାଗୀର ପରୀକ୍ଷା ସରିଯାଉ—ଦୁଃଖର ରାତି ତାରି ସକାଳ ହଉ—ସେଇ ଠାକୁର ଏକା ସାହା ଭରସା ।

(ଖୁବ୍ ଜୋର୍‌ରେ ଘଡ଼ଘଡ଼ିଟାଏ ମାରିଦେଲା—ନୀଳେନ୍ଦ୍ର ପଣତକାନରେ ଲୁହ ପୋଛିଲେ ।)

## ଦ୍ୱିତୀୟ ଦୃଶ୍ୟ

[ ନିଗ୍ରୁଛିଆ ନଇବନ୍ଧ—କିଛିଦୂରରେ ଘନ ଜଙ୍ଗଲ । ମେଘ ବତାସ ମାଡ଼ିଆସୁଛି—ମଣିଭଦ୍ର ଚଞ୍ଚଳ ଚଞ୍ଚଳ ସେବାଟେ ଫେରୁଥିଲେ ଗାଆଁକୁ । ବିପରୀତ ଦିଗରୁ କପିଳ ମହାପାତ୍ର ପ୍ରବେଶ କରି ତାଙ୍କୁ ଚିହ୍ନି ପାରି ଡାକିଲେ । ]

କପିଳ—ମଣି ଲରେ, ମଣିଭଦ୍ର !

ମଣି—କଏ, ମହାପାଞ୍ଜ ଆପଣେ ? କ'ଣ କହୁଚ ?

କପିଳ—କୁଆଡ଼େ ଏମିତ ଧପାଇଚ୍ ମ ? ଶୁଣ୍ ।

ମଣି—କଅଣ ଶୁଣିବ ଯେ ? ଆହେ, ମେଘ ଉଠାଇଲାଣିଟିକ ! ଯେ ପୁଆଡ଼େ ଗଲେଣି ସ୍ୱର, ମୁଁ ଫେର୍...

କପିଳ—ଆରେ ଯାଆନ୍ତୁ, ଉ ଶୁଣ୍ ! ହଇରେ ମଣି, ଏଡ଼େ ଯାଙ୍ଗ ହେଉଥିଲେ —ସବୁ କଅଣ ଭୁଲିଗଲ୍ ?

ମଣି—ଆହେ ଯାଙ୍ଗ ହେଉଥିଲେ କଅଣ ପାପ ଯାଉଁଛିବାକୁ ?

କପିଳ—ପାପ ? କ ପାପ ରେ ?

ମଣି—ଆଜ୍ଞ ମହାପାଜେ ! ତେମେ ଯାହା କରୁଚ କରୁଥାଅ, ମୁଁ ସେ ସବୁଥିରେ ନାହିଁ । ଆଉ ଗାଁରେ ମେଳା ଦେଖି ଯାଉଥିଲି ଯେ ମେଘ ଉଠାଇବାରୁ ଧାଇଁଚ—ଏଇନେ ଦ'କୋଶ ବାଟ ଯିବ ।

କପିଳ—ଆରେ ସେଇ କଥା ପଗ୍ ପଗ୍ଭୁଚ, ମେଳାରୁ ଫେରିଲୁଟି ?

ମଣି—ହଁ ପଗ୍ ! କାହିଁକ ?

କପିଳ—ମେଳାକୁ ଆଉ କଏ ସବୁ ଯାଇଥିଲେ ?

ମଣି—କଏ କଏ ଯାଇଥିଲେ ମୁଁ କଅଣ ଟିପି ରଖିଚ ?

କପିଳ—ବାଟରେ କାହାଣକ ଦେଖିଲୁ ? ତଥପୋଇ—ତଥପୋଇକ ?

ମଣି—ଦେଖିଥିବ ।

କପିଳ—(ଉତ୍ଫୁଲ୍ଲ ହୋଇ) ଦେଖିଚୁ, ଦେଖିଚୁ ? ସତ କହୁଚୁ ମଣିଆ ?

ମଣି—(ବିରକ୍ତ ହୋଇ) ମୁଁ ଦେଖିନାହିଁ ହେ ! ଅଠ ଗୁରେ ସିଆଣିଆ ଦେଖେଇ ହଉଚନ୍ତ !

କପିଳ—ଆଉ କହିଲୁ ?

ମଣି—ଏଁ, କହିବାକୁ କଅଣ ଗୁଣ୍ଡରେ ବଡା ଦବ ତେମେ ?

କପିଳ—ଦେଖ, ମଣିଆ ! କପିଳ ମହାପାଞ୍ଜ ଯାଙ୍ଗରେ ଥଟ୍ଟା ? ସତକଣ କହ —କୋଉଠି ଦେଖିଚୁ ତଥପୋଇକ ?

ମଣି—ମୁଁ ଦେଖିନାହିଁ ହେ ! ଅଡ଼ ଗୁରେ ସିଆଣିଆ ଦେଖେଇ ହଉଛ ! ଛାଡ଼ । (ହାତ ଛଡ଼େଇ ଚାଲିଗଲା, ସଙ୍ଗେ ସଙ୍ଗେ ଫେରିଆସି—) ଦେଖ ମହାପାତ୍ରେ ! ପାପର ମାତ୍ରା ଆଉ ବଢ଼ାଅନା ! ଆପଣା ଖୁଡ଼ୀର ଦଶାଟାକୁ ଟିକିଏ ମନରେ ହେଉ ! ମାଆ ମୋର ଶ୍ରାନ୍ତ ହୋଇ ଫେରି ଯାଇଚ । ଫେର୍ ତାକୁ ଦେଖେଇବ ଯେବେ···ଡେଙ୍ଗା ମୁଣ୍ଡରେ ଠେଙ୍ଗା ପଡ଼ିବ, ଶୁଧା-ଚଢ଼େଇରେ ପ୍ରାଣ ଯିବ—ବିବେଚନା କରି କାମ କରୁଥାଅ···ହୁଁ ! (ପ୍ରସ୍ଥାନ)

କପିଳ—ହାଃ ହାଃ ହାଃ ହାଃ—ଶୁଧା-ଚଢ଼େଇ ! ଆରେ ଚଢ଼େଇ ଆସି କେତେବେଳେ ପଡ଼ିବ ବୋଲି ଶୁଧାକୁ ଏଇନେ ହାତମୁଠାରୁ ଛାଡ଼ିଦେବ ? ହାଃ ହାଃ ହାଃ ।

ନେପଥ୍ୟେ—ତଅପୋଇ—ଘରମଣି ! ଘରମଣି !!

(କପିଳ ମହାପାତ୍ରେ ଲୁଚିଗଲେ ଗୋଟିଏ ଗଛର ଉହାଡ଼ରେ । ତଅପୋଇର ପ୍ରବେଶ ।)

ତଅପୋଇ—ଘରମଣି ! ଘରମଣି ! ମା'ମୋର କହିଚନ୍ତି ଘରମଣିକି ପାଇବ —ଭାଇମାନଙ୍କୁ ଦେଖିବ—ଭାଗ୍ୟ ମୋର ଫେରିବ ।

(କପିଳ ମହାପାତ୍ର ଲୁଚିବା ଜାଗାରୁ ବାହାରି ପଡ଼ିଲେ)

କପିଳ—ଫେରିବ ତଅପୋଇ, ଫେରିବ ।

ତଅପୋଇ—(ଚମକିପଡ଼ି) କିଏ ?

କପିଳ—ମୁଁ ତଅପୋଇ—କପିଳ ମହାପାତ୍ର—ଅଜଣା ଲୋକ କେହି ନୁହେଁ ।

(ଏତିକିବେଳେ ବିଜୁଳି ଚମକିଲା ।)

ତଅପୋଇ—ଓ, ତେମେ ? ହେଲେ, ଏଠି—ଏତେବେଳେ ?

କପିଳ—ତୋର ବିପଦବେଳେ ତ ବରାବର ମୁଁ ତୋ ପାଖରେ ଅଛି, ତଅପୋଇ !

ତଅପୋଇ—ହୁଁ, ସେକଥା ସତ; ଆଜ ସଞ୍ଜବେଳେ ନଈବନ୍ଧଠେଇଁ ଅଚେତା ହୋଇପଡ଼ିଥିଲି ଯେତେବେଳେ, ତେମେ ଥିଲ ବୋଲି ଉଦ୍ଧାର

ପାଗଳ ! ଏଇନେ ଏଇ ମେଘ-ପବନର ପାହାର ସହି, ଗାଢ ଅନ୍ଧାରକୁ ଆଡ଼େଇ ଦେଇ ନିଘଞ୍ଚିଆ ବଣ ଭିତରେ ଅସମ୍ଭବ ଆଶା ଘେନି ବୁଲୁଚି ସେତେବେଳେ, ତମେ ଆସି ଉଭାହେଉଚ ମୋର ସାହାଭରସା ରୂପେ···ମୁଁ—ସବୁ ବୁଝିଲି ।

କପିଳ—(ଖୁସିହୋଇ) ସେବେ ବୁଝିଚୁ ତଅପୋଇ—ଏଇ ଗାଢ ଅନ୍ଧାରରେ ଏଇ ଦୁର୍ଯୋଗବେଳରେ, ଏଇ ନିବୁଜ ଜଙ୍ଗଲ ଭିତରେ ଆଉ କାହିଁକି କାନ୍ଦୁଚୁ ? ମୋ କଥା ମାନି ମୋ ସାଙ୍ଗରେ ଆ'—ଦୁଃଖ ତୋର ହଜିଯିବ, ମୁହଁରେ ହସ ଫୁଟିଉଠିବ—ଭାଗ୍ୟ ତୋର ନିଶ୍ଚେ ଫେରିବ !

ତଅପୋଇ—ଭାଗ୍ୟ ଫେରିବ ବୋଲି ମାଆ ମୋର କହିଥିଲେ—ସେଇଥିପାଇଁ ତ ଏ ସାଧନା ମୋର—ଏ ସାଧନାପଥରେ ବାଧା ହଅନାହିଁ ତୁମେ ।

କପିଳ—ବାଧା ମୁଁ ଦେଉନାହିଁ ତଅପୋଇ ! ବାକି, ସାଧନାର ଫଳ କଅଣ ତତେ ଅପ୍ରାପ୍ତ ଅଛି ? ମୁଁ ପରା ତୋ ପାଖେ ପାଖେ ଅଛି ତୋର ଆଗରେ ଛିଡ଼ାହୋଇଚି ! ଆ'—ମୋ ସାଙ୍ଗରେ ଆ' ଦେଖିବୁ, ସବୁ ଦୁଃଖ, ସବୁ ଚିନ୍ତା ଭୁଲିବୁ···(ଏଇ ସମୟରେ ଖୁବ୍ ଜୋର୍‌ରେ ବିଜୁଳି ଚମକିଲା ଓ ଘଡ଼ଘଡ଼ି ମାରିଲା—ଦୂରରେ ବୋବାଇଲା ଛେଳି ।)

ତଅପୋଇ—ପରମଣି ! ପରମଣି ! (ବେଗେ ଚାଲିଗଲା ।)

କପିଳ—ତଅପୋଇ ! ତଅପୋଇ !

(ପଛେ ପଛେ ଗଲେ, ଦୂରରେ ଛେଳି ବୋବାଇବା ଶବ୍ଦ । ବିପରୀତ ଦିଗରୁ ଡାକ ଡାକ ନାଲୁ ମିଶ୍ରଙ୍କର ବେଗେ ପ୍ରବେଶ ।)

ନାଲୁ—ତଅପୋଇ ! ତଅପୋଇ ! ସୁମନ୍ତ ! ସୁମନ୍ତ ! ଏଇଆଡ଼େ—ଏଇଆଡ଼େ ଆସ ।

(ସୁମନ୍ତ ଦଉଡ଼ି ଆସିଲେ)

ସୁମନ୍ତ—ଚାଲ—ବେଗେ ଚାଲ ନାଲୁ ଭାଇନା ।

(ଦୁହେଁ ଧାଇଁଗଲେ ।)

# ତୃତୀୟ ଦୃଶ୍ୟ

[ ନଈ-ଜଙ୍ଗଲର ଅପର ଅଂଶ—ବର୍ଷା ଟିକିଏ ଥମିଯାଇଛି, ମାତ୍ର ବିଜୁଳି ଘଡ଼ଘଡ଼ି ଥମିନାହିଁ । ବର୍ଷାସିକ୍ତ, କ୍ଷତବିକ୍ଷତ ଅଙ୍ଗ କୁଳଶେଖର ଓ ଦାସ ମହାରଣାଙ୍କର ବାଟ ବାଣି ବାଣି ପ୍ରବେଶ । ]

କୁଳ—ତଅପୋଇ ! ତଅପୋଇ !

ଦାସ—ତୁମେମାନେ କଅଣ ସବୁ ପାଗଳ ହୋଇଗଲ ? ଏଇ ପ୍ରଳୟ ଘଡ଼ିରେ ଝିଅ ମୋର ଏଇ ବଣ ଭିତରକୁ ଆସିବ କାହିଁକି କହିଲୁ କୁଳ ? ମିଛଟାରେ ଏମିତି—

କୁଳ—ମିଛ ନୁହେଁ ମଉସା ! ମିଛ ନୁହେଁ—ନିଘାଟ, ନିଷ୍ଠୁର ସତ୍ୟ ! ଖାଉଜମାନଙ୍କ ଗଞ୍ଜଣା—ଖାଉଜମାନଙ୍କ ଅତ୍ୟାଚାର—ସୁମନ୍ତ କହୁଥିଲା—ଶୁଭେନ୍ଦୁ ବି କହୁଥିଲା—ହଁ, ହଁ, ସେଇ କଥା ସତ ! ସେଇ କଥା ସତ ।

ଦାସ—ସତ ଯେ, ତାକ—ଏଇ ବଣ ଭିତରକୁ, ଏଇ ଝଡ଼-ବରଷା ଘଡ଼ିରେ···

କୁଳ—ସହିପାରିନାହିଁ ମଉସା ! ସାତ ଭାଇଙ୍କର ଜୀବନସଙ୍ଖାଳି, ଲବଣୀପିତୁଳା ସାଧବଝିଅ—ସହିପାରିନାହିଁ ସେ ଗଞ୍ଜଣା, ସେ ଅତ୍ୟାଚାର । ପଳେଇ ଆସିଛି ଏଇ ଗହନ ବନସ୍ତକୁ । ହୁଏତ ଜୀବନ ହାରେଇ ସେ ଆମ ଉପରେ ସେ ପ୍ରତିଶୋଧ ନବ ମଉସା !

ଦାସ—ଛି-ଛି—ଏସବୁ ଅମଙ୍ଗଳ ଚିନ୍ତା କରନା ବାପ ! ତୁ ମୋ କଥା ମାନ୍—ବୋଇତ ଉପରକୁ ଚାଲ୍ ।

କୁଳ—ସରଳ ମନରେ ବିଶ୍ୱାସ କରି, ତରଳ ସ୍ନେହରେ ଅନ୍ଧହୋଇ, ଭାଇ-ଭାଉଜଙ୍କ ଭିତରର ପ୍ରଭେଦଟା ବୁଝିପାରିନଥିଲୁ । ଆମେ ଛାଡ଼ିଦେଇଗଲୁ—ଛାଡ଼ିଦେଇଗଲୁ ଆମ ସାତ ଭାଇଙ୍କର ନୟନ-ପିତୁଳା—ଛଅ-ଛଅଟା ରାକ୍ଷସୀଙ୍କ କବଳରେ । ସୁମନ୍ତ କହୁଥିଲା—ଏକା ସାନବୋହୂକୁ ଛାଡ଼ି ସମସ୍ତେ—ସମସ୍ତେ ଡାହାଣୀକି ଆମର—ନା, ସେ ଭୁଲର ପ୍ରାୟଶ୍ଚିତ୍ତ କରିବୁ ଆମେ ।

ଦାସ—କ ପ୍ରାୟଶ୍ଚିତ୍ତ କରବ କହ ?

କୁଳ—ଶାସ୍ତି—ଶାସ୍ତି ଦବୁ ! ଏମିତ ଶାସ୍ତି ମଉସା ! ଯାହା କେହୁ କେବେ କଳ୍ପନା କରିନଥିବ ।

(ରାଜ, ବଧୂ ପ୍ରଭୃତ "ସୁମନ୍ତ ! ସୁମନ୍ତ !" ଡାକ ପ୍ରବେଶ କଲେ ।)

ବଧୂ—କଏ—ରାଇ ! ମଉସା ! ସୁମନ୍ତ କାହିଁ ?

ଦାସ—ସୁମନ୍ତ ବୋଇତରେ ନାଇଁ ?

ବଧୂ—ନା, ସେ ଆଉ ମୁଁ ବଣ ଭିତରେ ତଅପୋଇର ସ୍ୱର ବାରି···

କୁଳ—ଶୁଣୁଚ—ଶୁଣୁଚ ମଉସା ? ତଅପୋଇର ସ୍ୱର । ମୋ ସୁନାଭଉଣୀର ଡାକ !! ମୁଁ ଶୁଣିଚ—ବଧୂ ଶୁଣିଚ—ସୁମନ୍ତ ଶୁଣିଚ । ସାତଭାଇଯାକ ଶୁଣିବେରେ, ସାତଭାଇଯାକ ଶୁଣିବେ ! ଘନଜଙ୍ଗଲ ଫାଟିପଡ଼ିବ ତାରି ଡାକରେ ।

ଦାସ—ମନ ଭିତରେ ଭଉଣୀଟି ତମର ଆସନ ପାତ ବସିଚ କ ନା— ସେଇଥିଲାଗି ତାରି ଡାକ ସଭିଙ୍କ କାନରେ ବାଜୁଚ ! ଋ ଏମିତ ବ୍ୟସ୍ତ ହ'ନା କୁଳ ! ଆଚ୍ଛା ବଧୂ ! ସୁମନ୍ତ ତେବେ···

ବଧୂ—କେଜାଣି ମଉସା ! ତଅପୋଇର ସ୍ୱର ବାରି ସେ ଆଉ ମୁଁ ତ ବାହାରିଲୁ ଖୋଜିବାକୁ—ବାଟରେ ନାଲୁ ମିଶିଲୁ ଦେଖିଲୁ—ସେ ବି ଖୋଜି ଗ୍ଲଲେ ଆମରି ସାଙ୍ଗରେ । ହେଲେ, ଏ ଘୋର-ଅନ୍ଧାରରେ ଅବାଟରେ ମାଡ଼ି ଗ୍ଲଲାବେଳେ ସେ ଦୁହେଁ ଯେ କୋଉଠି ରହିଗଲେ, ମୁଁ ଆଉ ତାଙ୍କୁ ପାଇବାକୁ ନାଇଁ ।

ଦାସ—ଶୁଭେନ୍ଦୁ—ଶୁଭେନ୍ଦୁ କାହିଁ ?

ରାଜ—କେଜାଣି, ବୋଇତରେ ସେ ନାହାନ୍ତି ।

କୁଳ—ଶୁଭେନ୍ଦୁ ! ଶୁଭେନ୍ଦୁ ଆମର କଏ ? ନିଜ ଜୀବନ ତୁଚ୍ଛକରି ଆମର ଜୀବନ ବଞ୍ଚେଇଚ—କାହିଁକି ? ରାଧା ବଦଳରେ ତଅପୋଇକି ପାଇବ—ଶୂନ୍ୟ ହୃଦୟ ତାର ପୂରଉଠିବ—ଏଇ ଆଶାରେ ! ବାକି, କାହିଁ ? କାହିଁ ସେ ଭଉଣୀ ଆମର ମଉସା ? ଧନର ବୋଇତ ବାହୁଡ଼ି

ଆସିଲାବେଲକୁ ମନର ବୋଇତ ଆମର ବୁଡ଼ିଯାଇଚ ମଝିନଈରେ !
କିଏ ରକ୍ଷାକରିବ ? କିଏ ଉଦ୍ଧାର କରିବ ? ନା-ନା—ଗାଁ ଭୂଠରେ
ଆଉ ବୋଇତ ଭିଡ଼ନାରେ—ଭିଡ଼ନା ! ଫେରିଯିବୁ ପୁଣି ସେଇ ଦରିଆ
ମଝିକି—ଯୋଉଠି ମନକୁ ସମାଧି ଦେଇ ଧନର ବେଉସା କରେ
ଓଡ଼ିଆ ସାଧବ ।

(ନାଲୁ ମିଶ୍ରେ ଧାଇଁଆସିଲେ)

ନାଲୁ—ଆସ ସାଉକାରେ ! ଆସ ମହାରଣାଏ ! ହଜିଲା ଛେଲି ଖୋଜିବାକୁ
ଆସି ଭଉଣୀ ମୋର ଆଉ ଘରକୁ ଫେରିନାଇଁ—ନିଶ୍ଚେ ଏଇ ବଣ
ଭିତରେ କୋଉଠି ଅଛୁ ।

କୁଲ—(ଚମକି) ଛେଲି !

ନାଲୁ—ହଁ, ହଁ, ଛେଲି । ହଂସୁଲି ଶେଯରେ ଶୁଆଉଥିଲ—ସତ ଲହୁଣୀ
ଖୁଆଉଥିଲ—ମୋତି ମାଣିକରେ ସଜାଉଥିଲ ଯୋଉ ଭଉଣୀକି—
ସେଇ ଭଉଣୀ—ସାଧବ ଘରର ଅଲଅଲ ଜେମା— ତଅପୋଇ—ଆଜି
ବଣ ଜଙ୍ଗଲରେ ବୁଲି ଛେଳି ଜଗେ—ଛେଳି !

କୁଲ—(ଉତ୍ତେଜିତଭାବେ) ବନ୍ଧୁ ! ସ୍ୱଜ ! ଶଶି !

(ଏଇ ସମୟରେ ଝଡ଼ ଉଠିଗଲା)

କୁଲ—ଏଇ ଝଡ଼ ଉଠିଲାରେ ବନ୍ଧୁ—ଝଡ଼—ଝଡ଼ । ହାଃ ହାଃ ହାଃ ହାଃ !

ବନ୍ଧୁ—ଭାଇ ! ଭାଇ !

ଦାସ—କୁଲ ! ଶାନ୍ତ ହ' ବାପ—ଚାଲ ମିଶ୍ରେ, ଚାଲ···ଚଞ୍ଚଳ ।

ନାଲୁ—ଆସ— ଧାଇଁ ଆସ ।

(ସମସ୍ତେ ବେଗେ ଚାଲିଗଲେ)

( ବିପରୀତ ଦିଗରୁ ତଅପୋଇର ପ୍ରବେଶ···ବର୍ଷାପାଣିରେ ଗୋଟାପଣେ
ଓଦା···ପିନ୍ଧା ବାସ ତାର ଚିକି ଚିକି ହୋଇଗଲାଣି । ଦେହ ମୁଣ୍ଡ କଣ୍ଟା
ବାଜି କ୍ଷତ ବିକ୍ଷତ ହେଲାଣି—ଚାଲିବାର ଶକ୍ତି ନାଇଁ—ତଥାପି ଚାଲିଚ
ସେ, ମଝିରେ ଝୁଣ୍ଟି ପଡ଼ିଯାଉଚ—ଫେର୍ ଉଠି ଚାଲିଚ । )

ତଅପୋଇ—(ଚମକି) କିଏ !! ନା—କେହି ନାହିଁ—ଝଡ଼ । ଏ ଝଡ଼ କଅଣ ସତେ ଥମିବ ? ହେଲେ, ମା-ମଙ୍ଗଳା କହିଛନ୍ତି—ଭାଇମାନଙ୍କୁ ଭେଟିବି । କେବେ ଭେଟିବି, କେଉଁଠି ଭେଟିବି ତ କହିଲେ ନାହିଁ ! ପରମଣିକି ନ ପାଇଲେ ତ ଘରକୁ ଲେଉଟି ପାରିବି ନାହିଁ ! ପରମଣିକି ଆଗ ଖୋଜିବି । ମାଆଙ୍କ କଥା କଅଣ ମିଛ ହବ ! (ଗୁଲୁ ଗୁଲୁ ହୁଣ୍ଡି ପଡ଼ିଗଲା ।)

ଓଃ—(ଉଠିଲା) ନା—ଥକିଗଲେ ତ ଚଳିବ ନାହିଁ ! ମାଆଁଙ୍କ କଥା ତ ଅମାନ୍ୟ କରିପାରିବି ନାହିଁ ! (ଚମକି) କିଏ ? ବଡ଼ଭାଇ, ସାନଭାଇ !! ହାଃ ହାଃ ହାଃ—କେହି ନାହିଁ, କେହି ନାହିଁ ।

(କପିଳ ମହାପାତ୍ରଙ୍କର ପ୍ରବେଶ)

କପିଳ—ମୁଁ ଅଛି ତଅପୋଇ !

ତଅପୋଇ—(ଚମକିପଡ଼ି) କିଏ—କିଏ ତୁ !

କପିଳ—ମୁଁ କପିଳ ମହାପାତ୍ର !

ତଅପୋଇ—ନା—ନା—ତମେ ଯାଅ ମୋ ଆଗରୁ ! ମୁଁ ମୋର ଭାଇ-ମାନଙ୍କୁ ଖୋଜୁଚି—ପରମଣିକି ଖୋଜୁଚି । କାହିଁକି ଭଲ···

କପିଳ—ଆଲେ, ଏଇ ତୋଫାନ ବର୍ଷା ରାତିରେ, ଏଇ ବଣଜଙ୍ଗଲ ଭିତରେ ଭାଇମାନେ ତୋର କଅଣ ସ୍ୱର୍ଗରୁ ଗଳିପଡ଼ିବେ—ନା ପରମଣି ତତେ ଗୁହାରିବଟିଚ ?

ତଅପୋଇ—ମା'ମଙ୍ଗଳାଙ୍କୁ ପୂଜା ମାନିଚି—ମା' ମତେ କହିଚନ୍ତି—

କପିଳ—ଆଲେ, ମାଆମାନେ ପିଲଙ୍କୁ ଭଣ୍ଡେଇବା ପାଇଁ ସେମିତି କେତେ କଥା କହନ୍ତି । ମୁଁ ଯାହା କହୁଚି ଶୁଣ—ଭାଇମାନେ ତୋର ଫେରିବା କଥାଟି ମିଛ । ଦରିଆ ମଝିରେ ବୋଇତ ବୁଡ଼ିଚି, ସାଧବମାନେ କେହି ଉଧୁରି ନାହାନ୍ତି । ଆଉ ପରମଣି ଛେଳିଟା କୋଉଠି ବାଘ-ଭାଲୁଙ୍କ ପେଟରେ ଗଲାଣି !! ତୁ ଏମିତି ରାତିବେଳେ ଏଇ ବଣନ୍ତ ଭିତରେ ବୁଲିଲେ ଶେଷରେ ତୁ ବି କୋଉ ଜନ୍ତୁ-ଜନ୍ତାଙ୍କ ଗର୍ଭରେ ପଡ଼ିବୁ ।

ସେଥିପାଇଁ କହୁଚ—ମୋ ବୋଲ କର ! ତୋର ଡର କଅଣ ?
ଷାଇମାନେ ତ ଚଡ଼ାକାଟି ଗଲେ । ଷାଉଜମାନେ ତ ପର କରିଦେଲେ ।
ତଅପୋଇ—ନା—ନା । ମାଆଙ୍କ କଥା କଅଣ ମିଛ ହବ ?
କପିଳ—ଆଉ ମାଆଁ ନାହିଁ କି—ବାପା ନାହିଁ । ଏଣିକେ ଏଇ କପିଳ
ମହାପାତ୍ର ଯାହା ଭରସା । କାହିଁକି—ତୋର କଅଣ ପସନ୍ଦ ହେଉ
ନାହିଁ ? ବ୍ରାହ୍ମଣ ପିଲା ମୁଁ—ଧନ ସମ୍ପତ୍ତିରେ ତ ଊଣା ନୁହେଁ । ମୋର
କଏ ଅଛୁ ଭୋଗ କରିବ ? ଆ—ମୋ ସାଙ୍ଗରେ ଚାଲି ଆ—ଏ ଗାଁ ଛାଡ଼ି
ଏ ରାଇଜ ଛାଡ଼ି ଚାଲିଯିବା—ରାତାରାତି—କେହି ଜାଣିବେ ନାହିଁ—
କେହି ଦେଖିବେ ନାହିଁ ।
ତଅପୋଇ—ନା—ନା । ଏ କଅଣ କହୁଚ ।
କପିଳ—ଠିକ୍ କହୁଚ ତଅପୋଇ ! ଅକାରଣ ଏସବୁ ଦୁଃଖ ଯନ୍ତ୍ରଣା
ଭୋଗିବୁ କାହିଁକି ? ଆଜି କପିଳ ମହାପାତ୍ର ତତେ ନେହୁରା ହଉଚ—
ରାଣୀ କରି ରଖିବ ଲୋ—ରାଣୀ କରି ରଖିବ । ଆ' !
ତଅପୋଇ—ତମେ ଚାଲିଯାଅ—ତମେ ଚାଲିଯାଅ—ଓଃ, ମା ଗୋ !!
କପିଳ—ହାଃ—ହାଃ—ଚାଲିଯିବା ପାଇଁ କଅଣ ଏଇ ବର୍ଷା ବତାସ ମୁଣ୍ଡରେ
ବହି ତୋ ପଛେ ପଛେ ଧାଇଁ ବୁଲୁଚ—ଏଇ ରାତି ଅନ୍ଧାରରେ, ଏ
ବନସ୍ତ ଭିତରେ ।
(ଏଇ ସମୟରେ ନିକଟରେ କେଉଁଠି ଛେଳି ବୋବାଇଲା)
ତଅପୋଇ—ଏଇ ମୋ ଘରମଣି ! ଘରମଣି ! ଘରମଣି !
(ଚାଲିଯାଉଥିଲା)
କପିଳ—ଆରେ ରଖ ତୋ ଘରମଣି ।
(ଧରିପକାଇଲା ତଅପୋଇକି)
ତଅପୋଇ—ଛାଡ଼—ଛାଡ଼ମତେ—ଛାଡ଼
କପିଳ—ହାଃ ହାଃ ହା । ଛଇଲୀ ଟୋକୀଙ୍କ ପହିଲି ଢଙ୍ଗ ତାଙ୍କ ମତେ ଖୁବ୍
ଜଣାଅଛୁ । ଆ'—ଚାଲିଆ ମୋ ସାଙ୍ଗରେ କହୁଚ ।
ତଅପୋଇ—ଓଃ—ଛାଡ଼ ମତେ ।

କପିଳ—ହାଃ ହାଃ ହାଃ । ପାଟିକରି ବନସ୍ତ ଫଟେଇ ଦେଲେ ବି କେହି ନାହିଁ ତୋ ପିଠିରେ ପଡ଼ିବାକୁ ।

ତଅପୋଇ—ମା ଗୋ, ମା ମଙ୍ଗଳା ! ମତେ ରକ୍ଷାକର ମା'—ମତେ ରକ୍ଷା କର !

କପିଳ—ହାଃ ହାଃ ହାଃ—

(ଏଇ ସମୟରେ ବିଜୁଳି ଚମକି ଗଲା—ତଅପୋଇକୁ ଖୁବ୍ ଜୋର୍‌ରେ ଆକର୍ଷଣ କଲାବେଳେ ବନ୍ଧୁକର ଶବ୍ଦ ହେଲା—କପିଳ ମର୍ମାଘାତ ଆହତ ହୋଇ ପଡ଼ିଗଲା । ତଅପୋଇ ବି ମୂର୍ଚ୍ଛିତା ହୋଇ ପଡ଼ିଯାଉଥିଲାବେଳେ ବେଗେ ବନ୍ଧୁକଧାରୀ ଶୁଭେନ୍ଦ୍ର ଧାଇଁଆସି ତାକୁ ବକ୍ଷରେ ଧରିନେଲେ । (ଠିକ୍ ସେତିକିବେଳେ "ତଅପୋଇ" "ତଅପୋଇ" ଡାକି ଡାକି ବିପରୀତ ଦିଗରୁ ସୁମନ୍ତର ପ୍ରବେଶ ।)

ସୁମନ୍ତ—କିଏ—ଶୁଭନନା !

(ଶୁଭେନ୍ଦ୍ର ତଅପୋଇକୁ ଟେକିଧରି ସୁମନ୍ତକୁ ଦେଲେ ।)

ଶୁଭେନ୍ଦ୍ର—ନେ ସୁମନ୍ତ ! ନେ ତୋର ପ୍ରାଣ-ପ୍ରିୟତମା ତଅପୋଇକୁ । ମୋର ହଜିଲା ଭଉଣୀ ତଅପୋଇକୁ ! ସେ ଆଜି ଏକା ତୋର ନୁହେଁ, ମୋର ନୁହେଁ, ସାଧୁକାରଙ୍କ ଭଉଣୀ ନୁହେଁ—ଓଡ଼ିଶା ଦେଶର—ଓଡ଼ିଆ ଜାତିର ବଡ଼ ଆଦରର ବଣିଜଲକ୍ଷ୍ମୀ ସାଧବଝିଅ ! କ୍ଷତ୍ରିୟ ତୁ' ସୁମନ୍ତ, କ୍ଷତ୍ରିୟର ବାହୁଚ୍ଛାୟା ତଳେ ସ୍ତ୍ରୀ'କୁ ଆଶ୍ରୟ ଦେ—ସ୍ତ୍ରୀର ମର୍ଯ୍ୟାଦା ବଞ୍ଚେଇ ରଖ୍—ସ୍ତ୍ରୀର ମହତ୍ତ୍ୱ ସାଇତି ରଖ୍ ।

(ବିଜୁଳି ଚମକିଲା—ତଅପୋଇ ଚାହିଁଦେଲା)

ତଅପୋଇ—କିଏ (ଚମକି)

ସୁମନ୍ତ—ତଅପୋଇ !

ତଅପୋଇ—ସୁମନ୍ତ !

(ନେପଥ୍ୟେ ଶୁଣାଗଲା ନାଲୁ ମିଶ୍ରଙ୍କ କଣ୍ଠସ୍ୱର ।)

ନାଲୁ—ଏଇଆଡ଼େ—ଏଇଆଡ଼େ ଶୁଭୁଚ !

(ନାଲୁ ମିଶ୍ର, ବୁଲ, ବଧୂ, ଗଜ ଓ ଦାସ ମହାରଣାଙ୍କର ପ୍ରବେଶ)

ବୁଲ--ଡଥପୋଇ ! ଡଅପୋଇ !

ଡଥପୋଇ—ଷ୍ଟଇ ! ଷ୍ଟଇ !

ବୁଲ—ସୁନା ଭଉଣୀ ମୋର ! ସୁନା ଭଉଣୀ ମୋର !

□□□

# ସାଧବଝିଅ

ଓଡ଼ିଆ ନାଟ୍ୟସାହିତ୍ୟକୁ ଋଦ୍ଧିମନ୍ତ କରିଥିବା ପ୍ରତିଭାମାନଙ୍କ ମଧ୍ୟରେ ନାଟ୍ୟକାର ଅଦ୍ୱୈତ ଚନ୍ଦ୍ର ମହାନ୍ତି ଅନ୍ୟତମ । ନାଟକୀୟତା ସହିତ କବିତ୍ୱର ସମ୍ମିଶ୍ରଣରେ ତାଙ୍କ ରଚନାଗୁଡ଼ିକ ରସସିକ୍ତ ହୋଇଉଠିଛି ।

'ସାଧବଝିଅ', 'ରାଧିକା', 'ନରଦେବତା' ଓ 'ପରିଚୟ' ପ୍ରଭୃତି ନାଟକ ଗ୍ରନ୍ଥରେ ନାଟ୍ୟକାରଙ୍କ ସ୍ୱତନ୍ତ୍ର ଶୈଳୀ ଓ ନାଟ୍ୟ ସାହିତ୍ୟ ସୃଷ୍ଟିର ବଳିଷ୍ଠ ପରିଚୟ ମିଳିଥାଏ । ଅଦ୍ୱୈତ ଚନ୍ଦ୍ର ମୁଖ୍ୟତଃ ପରମାର୍ଥବାଦୀ ଦର୍ଶନରେ ଅନୁରାଗୀ । ତେଣୁ ତାଙ୍କର ସମସ୍ତ ସାହିତ୍ୟରେ ଏହି ସ୍ୱର, ମାଟିର ଲୁପ୍ତଗୌରବ ପ୍ରତି ମମତା ଓ ସହାନୁଭୂତିର ବାଣୀ ଝଂକୃତ ହୋଇଥାଏ ।

'ସାଧବଝିଅ' ଓଡ଼ିଶାର ଜନପ୍ରିୟ ଲୋକକଥା ତଅପୋଇ ଉପରେ ଆଧାରିତ । ଦିନେ ଓଡ଼ିଆ ଏକ ସାମୁଦ୍ରିକ ଜାତି ଥିଲା ଏବଂ ଓଡ଼ିଆମାନେ ଦୁର୍ଦ୍ଧର୍ଷ ନାବିକ ଥିଲେ, ଏହି ଐତିହାସିକ ତଥ୍ୟ ଉପରେ ଏ ନାଟକଟି ରଚିତ । ନାଟକରେ ସେ ଯୁଗର ଅନେକ ସାମାଜିକ, ରାଜନୈତିକ ଓ ଧର୍ମୀୟ ଚିତ୍ର ପ୍ରତିବିମ୍ବିତ ହୋଇଛି ।

## ପ୍ରଶ୍ନାବଳୀ

୧ । ତଅପୋଇ ଜୀବନର ସୁଖ ଦୁଃଖ ବର୍ଣ୍ଣନ କର ।

୨ । "ସେ ଆଜି ତୋ'ର ନୁହେଁ, ମୋ'ର ନୁହେଁ, ସାହୁକାରଙ୍କ ଭଉଣୀ ନୁହେଁ—ଓଡ଼ିଶା ଦେଶର—ଓଡ଼ିଆ ଜାତିର ବଡ଼ ଆଦରର ବଣିଜ ଲକ୍ଷ୍ମୀ ସାଧବଝିଅ ।"—କେଉଁ ପରିପ୍ରେକ୍ଷୀରେ ଏକଥା କୁହାଯାଇଛି ? ବଣିଜଲକ୍ଷ୍ମୀ କହିବାର ତାତ୍ପର୍ଯ୍ୟ କ'ଣ ?

୩ । ସାଧବଝିଅ ନାଟକ ଅନୁସରଣରେ ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ସମ୍ପର୍କରେ ଏକ ସନ୍ଦର୍ଭ ଲେଖ ।

୪ । 'ଖଚମିଛ କହି ଦୁନିଆକୁ ଭଣ୍ଡି ଦେଇପାର, ଦୁନିଆଁର ମାଲିକକୁ ଭଣ୍ଡିବାର ସାହସ କରନା ।'—ଏକଥା କିଏ କାହାକୁ କହୁଛି ? ଯେ କହୁଛି, ତା'ର ଚରିତ୍ର ଚିତ୍ରଣ କର ।

୫ । "ନିର୍ଭୀକ ନିଶ୍ଚିନ୍ତ ମନରେ ମୋ' ଆଗରେ ଛିଡ଼ାହୋଇ ମତେ ଖାଇ ବୋଲି ଡାକିପାରିଲୁ ? ଏ ଗ୍ରେରଣ୍ଟାର ଆଖିରେ ଲୁହ ଭରି ଦେଇ-ପାରିଲୁ ?"—ଏକଥା କିଏ, କାହିଁକି ଓ କାହାକୁ କହୁଛି ? ବକ୍ତାର ଜୀବନରେ କି ପରିବର୍ତ୍ତନ ସବୁ ଘଟିଥିଲା ?

୬ । "'ମୋ' ଲକ୍ଷ୍ମୀ ମାନ ମୋ' ସାଙ୍ଗରେ ଥା'—ଦୁଃଖ ତୋ'ର ଉଭେଇ ଯିବ, ମୁହଁରେ ହସ ଫୁଟି ଉଠିବ—ଭାଗ୍ୟ ତୋ'ର ନିଶ୍ଚେ ଫେରିବ ।" ଏଠାରେ ବକ୍ତା କିଏ ? କାହାକୁ, କେଉଁ ଅବସ୍ଥାରେ ସେକଥା କହୁଛି ? ବକ୍ତା ସଂପର୍କରେ ତୁମର ମତାମତ ଉଲ୍ଲେଖକର ।

୭ । ସୁକରାଣୀ ଚମ୍ପୀର ଉନ୍ନତ ଚରିତ୍ର, ବିଶ୍ୱସ୍ତତା ଓ ପ୍ରଭୁପ୍ରାଣତା ତା' ଚରିତ୍ରକୁ ମହନୀୟ କରିଛି—ଏ କଥାଟିର ସତ୍ୟାସତ୍ୟ ନିର୍ଣ୍ଣୟ କର ।

୮ । ଧନୁଆ ଏକ ସରଳ କିଶୋର ହେଲେହେଁ, ତା' ପ୍ରାଣରେ ଅନ୍ୟ ପ୍ରତି ଦରଦ ଓ ସହାନୁଭୂତି ରହିଥିଲା—ଏ ଉକ୍ତି କେତେଦୂର ଠିକ୍ ଆଲୋଚନା କର ।

୯ । ବିଧବା ବ୍ରାହ୍ମଣୀ ଯୋଗୁଁ ସାଧବବଂଶର କି କ୍ଷତି ଘଟିଥିଲା ?

୧୦ । ସଂକ୍ଷିପ୍ତ ଟିପ୍ପଣୀ ଲେଖ :

(କ) ଚୀନାକୋଠି
(ଖ) ଛନୁଆ ବନ୍ଦର
(ଗ) ପିପଥାଡ଼ିଆ ପାହାଡ଼
(ଘ) ଧରଣୀ
(ଙ) ନଲୀ-ଦ୍ୱୀନ

୧୧ । ଦାସ ମହାରାଣୀଙ୍କ କାର୍ଯ୍ୟ, ବ୍ୟବହାର ତଥା ଚରିତ୍ର ଆଲୋଚନା କର ।

୧୨ । ସାଧବଝିଅ ନାଟକର କୁଳଶେଖର ସମେତ ସାତଭାଇଙ୍କ କାର୍ଯ୍ୟକଳାପର ଏକ ଚିତ୍ର ଦିଅ ।

୧୩ । ହଂସରଥଙ୍କ ମାଧ୍ୟମରେ ଯେଉଁ ହାସ୍ୟରସ ପରିବେଷଣ କରାଯାଇଛି, ତା'ର ଏକ ସବିଶେଷ ବର୍ଣ୍ଣନ ଦିଅ ।

୧୪ । ସୁନାବୁନ୍ଦ, ରଙ୍ଗଡ଼ାଳମ୍ବ, ରାଜବଣିଆ କୁଣ୍ଡା, ରାମେଣ୍ଟ, ମଣ୍ଡରା ଇତ୍ୟାଦି ଉପରେ 'ସାଧବଝିଅ' ନାଟକ ଅନୁସରଣରେ ଟିପ୍ପଣୀ ଦିଅ ।

୧୫ । ସାଧବଝିଅ ନାଟକଟି ତତ୍କାଳୀନ ଓଡ଼ିଶାର କେଉଁ ଚିତ୍ର ପରିବେଷଣ କରିଥାଏ ? [ସାମାଜିକ, ରାଜନୀତିକ, ଅର୍ଥନୀତିକ, ଧର୍ମୀୟ ତଥା ବାଣିଜ୍ୟିକ ଦୃଷ୍ଟିରୁ ବିଚାର୍ଯ୍ୟ । ]

୧୬ । ସାଧବଝିଅ ନାଟକର ଐତିହାସିକତା ବିଚାରକର ।

୧୭ । ସାଧବଝିଅ ନାଟକର ତଅପୋଇ ଓ ରାଧା ଚରିତ୍ରକୁ ତୁଳନା କର ।

୧୮ । କାଳୁମିଶ୍ର ନ ଥିଲେ ସାଧବଝିଅ ନାଟକର ପରିଣତି କଅଣ ହୋଇ ଥାଆନ୍ତା ?

---